# ତିନି ଶୁଆ କଥା

ଲେଖିକା
ଶ୍ରୀମତୀ କଲ୍ୟାଣୀ ଘୋଷ



ବନ୍ଧୁ ବୁକ୍ ଷ୍ଟୋର
ବାରିକପଥ୍, ବ୍ରହ୍ମପୁର, ଗଞ୍ଜାମ

ମୂଲ୍ୟ—ପାଞ୍ଚଟଙ୍କା ମାତ୍ର

ଏଥିରେ ପଢିବାକୁ ପାଇବେ— ପୃଷ୍ଠା



---


ତିନି ଶୁଆ କଥା

ଲେଖିକା—ଶ୍ରୀମତୀ କଲ୍ୟାଣୀ ଘୋଷ

ପ୍ରକାଶକ—ଶ୍ରୀ ଭାସ୍କର ଚନ୍ଦ୍ର ପାତ୍ର

ଛଜପୁ ବୁକ୍ ଷ୍ଟୋର

ଜାଗଲ୍ସ, ବ୍ରହ୍ମପୁର

ପ୍ରକାଶକାଳ : ବିଜୟା ଦଶମୀ ୧୯୯୦

ମୁଦ୍ରଣ : ତ୍ରିମୂର୍ତ୍ତି ପ୍ରିଣ୍ଟର୍ସ

ମୂଲ୍ୟ : ପାଞ୍ଚଟଙ୍କା ମାତ୍ର

# ତିନି ଶୁଆ କଥା



ଗୋଟିଏ ଦେଶରେ ଜଣେ ରାଜା ଥା'ନ୍ତି । ସେ ଯେମିତ ବୁଦ୍ଧିମାନ୍, ସେମିତ ବୀର । ତାଙ୍କର ମନ୍ତ୍ରୀ ମରିଗଲେ । ସେ ମନ୍ତ୍ରୀ ବି ବଡ଼ ବୁଦ୍ଧିମାନ୍ ଥିଲେ । ସେମିତ ବୁଦ୍ଧିମାନ୍ ମନ୍ତ୍ରୀଟିଏ ସେ ପାଇବେ କେଉଁଠୁ ! ଦିନରାତି ତାଙ୍କର ଏହି ଚିନ୍ତା । ରାଜ୍ୟରେ ଢେଙ୍ଗୁରା ଦେଲେ ଆଗାମୀ ସୋମବାର ଦିନ ମନ୍ତ୍ରୀ ବଛା ହେବ । ଯେଉଁମାନେ ମନ୍ତ୍ରୀ ହେବା ପାଇଁ ଇଚ୍ଛୁକ, ସେମାନେ ରାଜସଭାକୁ ଠିକ୍ ସମୟରେ ଆସିବେ ।

ତା'ପର ଦିନ ରାଜା ବଗିଚାରେ ବସିଥାନ୍ତି । ଜଣେ ସାଧୁ ଆସି ରାଜାଙ୍କୁ ତିନୋଟି ଶୁଆ ଦେଇ କହିଲେ—ଏମାନଙ୍କ ଭିତରୁ ଆପଣ ଗୋଟିଏ ବାଛି ନିଅନ୍ତୁ । ତିନୋଟିରୁ ଗୋଟିଏ ଜଡ଼ା, ଗୋଟିଏ କାଲ ଓ ଅନ୍ୟଟି ଅନ୍ଧ । ଆପଣ ଗୋଟିଏକୁ ବାଛି ଅନ୍ୟ ଦୁଇଟିକୁ ମୋତେ ଫେରାଇ ଦିଅନ୍ତୁ ।

ରାଜା କହିଲେ--ମୋତେ କିଛି ଦିନ ସମୟ ଦିଅନ୍ତୁ ।

ସାଧୁ କହିଲେ—ସାତ ଦିନ ସମୟ ଦେଲି । ଗୋଟିଏ ରଖି ଅନ୍ୟ ଦୁଇଟିକୁ ଉଡ଼ାଇ ଦେଲେ ସେମାନେ ଯାଇ ମୋ ପାଖରେ ପହଞ୍ଚିଯିବେ । ଏତିକି କହି ସାଧୁ ଜଣକ ଚାଲିଗଲେ ।

ସୋମବାର ଦିନ ମନ୍ତ୍ରୀପଦ ପାଇଁ ପ୍ରାର୍ଥୀମାନେ ଆସି ରାଜସଭାରେ ପହଞ୍ଚିଲେ । ରାଜା ସେମାନଙ୍କୁ ତିନୋଟି ଶୁଆ ଦେଖାଇ କହିଲେ—ଏଥିରୁ ଗୋଟିଏ ମୁଁ ରଖିବି । ଆପଣମାନେ ବାଛନ୍ତୁ ।

କେତେଜଣ କାଲିକୁ ବାଛିଲେ, ଆଉ କେତେଜଣ କଡ଼ାକୁ ବାଛିଲେ । ମାତ୍ର କେହି ଅନ୍ଧ ଶୁଆ ଆଡ଼କୁ ଚାହିଁଲେ ନାହିଁ । ରାଜାଙ୍କ ମନକୁ ସେମାନଙ୍କ କଥା ପାଇଲା ନାହିଁ । ପ୍ରାୟ ସଭା ଭାଙ୍ଗିବା ଉପରେ । ଠିକ୍ ସେତିକି ବେଳେ ଜଣେ ଲୋକ ଆସି ପହଞ୍ଚିଲେ । ତାଙ୍କ ନାଁ ହେଉଛି ବିଶାଖ । ରାଜା ତାଙ୍କୁ ବି ଶୁଆ ଦେଖାଇଲେ । ସେ ପ୍ରଥମ ଶୁଆ ପାଖକୁ ଯାଇ ପଚାରିଲେ—

ତୁମ ନାଁ କଣ ?

ଶୁଆଟି ନୀରବ ରହିଲା ।

ବିଶାଖ ପୁଣି ପଚାରିଲେ—ତୁମେ ସାଧୁଙ୍କ ପାଖରେ ଥିଲ ? ଉତ୍ତରରେ ଶୁଆଟି କେବଳ ମୁଣ୍ଡ ଟୁଙ୍ଗାରିଲା ।

ବିଶାଖ ବୁଝି ପାରିଲେ ସେ ଦେଖିପାରେ, ଶୁଣିପାରେ କିନ୍ତୁ କହିପାରେ ନାହିଁ ।

ବିଶାଖ ଦ୍ୱିତୀୟ ଶୁଆ ନିକଟକୁ ଯାଇ ସେଇ ପ୍ରଶ୍ନ କଲେ ।

ସେ ଶୁଆଟି କହିଲା—ଆପଣ ମୋତେ ପ୍ରଶ୍ନ ପଚାରୁଛନ୍ତି, ମାତ୍ର ମତେ କିଛି ଶୁଣାଯାଉ ନାହିଁ ।

ବିଶାଖ ଅନ୍ଧ ଶୁଆ ନିକଟକୁ ଯାଇ ପଚାରିଲେ, ତୁମ ନାଁ କ'ଣ ?

ଅନ୍ଧଶୁଆ କହିଲା—ମୋ ନାଁ 'କୁଶାଗ୍ର ବୁଦ୍ଧି' । ବିଶାଖ ଆଶ୍ଚର୍ଯ୍ୟ ହେଲେ । ତା'ପରେ ଶୁଆକୁ ପଚାରିଲେ, ଆଚ୍ଛା କହିଲ ଦେଖି ଜଣେ ଦେଶଦ୍ରୋହୀ ଓ ଜଣେ ଚୋର ଦୁହିଁଙ୍କ ଭିତରୁ କଠୋର ଦଣ୍ଡ କାହାକୁ ଦେବା ଉଚିତ ?

ଶୁଆ ସାଙ୍ଗେ ସାଙ୍ଗେ ଉତ୍ତର ଦେଲା—ଦେଶଦ୍ରୋହୀଙ୍କୁ । ଚୋର ଚୋରିକରି ନିଜ ନାଁରେ କଳଙ୍କ ଲଗାଏ କିନ୍ତୁ ଦେଶଦ୍ରୋହୀ ଦେଶ ନାଁରେ କଳଙ୍କ ବୋଳି ଦିଏ । ତେଣୁ ସେ ଦେଶର ଶତ୍ରୁ ।

ବିଶାଖ କହିଲେ—ମହାରାଜ, ଏଇ ଅନ୍ଧ ଶୁଆଟିକୁ ରଖନ୍ତୁ । ତା'ପରେ ରାଜା କୁଶାଗ୍ର ବୁଦ୍ଧିକୁ ରଖି ଅନ୍ୟ ଦୁଇଟିକୁ ଉଡାଇ ଦେଲେ ।

ରାଜା ବିଶାଖର ବୁଦ୍ଧିକୁ ତାରିଫ ନ କରି ରହି ପାରିଲେ ନାହିଁ । ତେଣୁ ତାଙ୍କ ମୁଣ୍ଡରେ ମନ୍ତ୍ରୀ ଶିରପା ବାନ୍ଧି ଦେଲେ ।



# ଯେତେ ସବୁ ବାଜେ କଥା



ଚାଷୀଟିଏ ଜଙ୍ଗଲକୁ ଯାଉଥିଲା କାଠ ହାଣିବା ପାଇଁ । ସାଙ୍ଗରେ ଥିଲା ତା'ର କୁକୁରଟିଏ । ଦେଶୀଆଳୁ ଲତାଟିଏ ଦେଖି ଭାବିଲା—ଯାଉଛି, ଦେଶୀଆଳୁ ଖଣ୍ଡେ ଖୋଳିବ ।

ଆଜି ଘରେ ତରକାରି କରିବା ପାଇଁ କିଛି ନଥିଲା । ଦେଶୀଆଳୁ ଖୋଳିବା ପାଇଁ ମାଟିରେ ଯିମିତି ଖଣତି ଛୁଆଁଇଛି, ଦେଶୀଆଳୁ କହିଲା—

ଚାଷି ଭାଇ ହେ ଚାଷୀ ଭାଇ,
ସକାଳୁ କିଆଁ ଆସିଛ ଧାଇଁ ?
ଖୋଳିବ ବୋଲି ମୋତେ,
ଏତେ ସାହସ ସତେ !

ଚାଷୀ ବଲବଲ କରି ତା' କୁକୁର ଆଡ଼କୁ ଚାହିଁ କହିଲା- ଆରେ, ତୁ କ'ଣ କଥା କହିଲୁଣି ?

କୁକୁର କହିଲା—ମୁଁ କାହିଁକି କହିବି ମ ! ଦେଶୀଆଳୁ ପରା ଗୀତ ବୋଲୁଛି, ତୁମେ ତାକୁ ଖୋଳ ନାହିଁ ।

ଗୃଷୀ କୁକୁର ଉପରେ ରାଗି ଯାଇ କହିଲା—ତୁ ଛାର କୁକୁରଟାଏ ହୋଇ ମୋତେ ପୁଣି ବୁଦ୍ଧି ଶିଖାଉଛୁ ! ରହ, ତୋତେ ଠିକ୍ କରି ଦେଉଛି ।

ସେ ଗଛରୁ ଡ଼ାଳଟିଏ ଭାଙ୍ଗି କୁକୁରକୁ ପିଟିବା ପାଇଁ ଗଲାବେଳେ ଗଛ ପାଟି କରି କହିଲା—

କୁକୁର ଉପରେ ରାଗିଲ
ମୋ' ଡ଼ାଳ କିଆଁ ଭାଙ୍ଗିଲ ?

ଗୃଷୀ ରାଗିଯାଇ ଡ଼ାଳଟି ଫୋପାଡ଼ି ଦେଲା । ତାହା ଦେଖି ଡାଳ କହିଲା—

ଗଛରୁ ତ ମୋତେ ଅଲଗା କଲ
ରାଗିଯାଇ କିଆଁ ଫୋପାଡ଼ି ଦେଲ ?

ଡ଼ାଳଟା ଯାଇ ଗୋଟାଏ ପଥର ଉପରେ ପଡ଼ିଲା । ପଥର କହିଲା—

କିଏରେ ତୁହି,
ପଥର ବୋଲି ମୋ' ଜୀବନ ନାହିଁ !
ଡାଳ ଫିଙ୍ଗିଦେଲୁ ଉପରେ ମୋର
ବେଗି ବେଗି ଏବେ ବାହାର କର ।

ଏ କଥା ଶୁଣି ଗୃଷୀର ଅକଲ ଗୁଡ଼ୁମ୍ । ଆଜି ସକାଳୁ ଏମିତ କ'ଣ ହେଉଛି କେଜାଣି ! ଦେଖୀ ଆଳୁ, ଗଛ ଡ଼ାଳ, ପଥର ସମସ୍ତେ ତ କଥା କହିଲେଣି । ଏହା ଭାବି ସେ ଏକ ମୁହାଁ ହୋଇ ଧାଇଁଲା ।

ବାଟରେ ଜଣେ ମାଛଧରାଳି ଜାଲ ଧରି ନଈକୁ ଯାଉ-ଥାଏ । ସେ ଗୃଷୀକୁ ଦେଖି କହିଲା—

ହଇରେ ଝିଇ,
ଧାଉଁ କାହିଁ ଏତେ ଅଧୀର ହୋଇ ?
କ'ଣ ହେଲା ତୋର ?

ଚୃଷୀଟି କହିଲା—କ'ଣ ନ ହେଲା କହୁନ ! ସକାଳୁ ସକାଳୁ ଦେଶୀ ଆଳୁ କହୁଚି—ମୋତେ ଖୋଳନା । ଗଛ କହୁଚି—ଡ଼ାଳ ଭାଙ୍ଗିଲୁ କାହିଁକି ? ଡ଼ାଳ କହୁଛି—ମୋତେ ଫିଙ୍ଗିଲୁ କାହିଁକି ? ପଥର କହୁଚି—ମୋ' ଉପରୁ ଡ଼ାଳ ବାହାର କର ।

ମାଛ ଧରାଳି କହିଲା—ଏଥିରେ ଡ଼ରିବାର କ'ଣ ଅଛି ?

ଏତିକି ବେଳେ ତା' କାନ୍ଧ ଉପରେ ଥାଇ ଜାଲ ପାଟିକରି କହିଲା—ତୁମେ ସେ ପଥର ଉପରୁ ଡ଼ାଳ କାଢ଼ିଲ ନା ନାହିଁ ?

ମାଛ ଧରାଳି ଚମକି ପଡ଼ି ଜାଲକୁ ଫିଙ୍ଗିଦେଇ ବୋଉଲୋ, ବାପାଲୋ, ଡାକ ଛାଡ଼ି ଚୃଷୀ ସାଙ୍ଗରେ ଦୌଡ଼ିଲା ।

ଦହେଁ ଧାଇଁଥା'ନ୍ତି । ବାଟରେ ସେମାନଙ୍କର ଭେଟ ହେଲା ଆଉ ଜଣଙ୍କ ଧାଙ୍ଗଡ଼େଇ । ସେ ଲୁଗା ଟିଣ୍ଟିଲିଟିଏ ପିଠିରେ ପକାଇ ଯାଉଥାଏ । ସେ ଦୁଇଜଣଙ୍କୁ ଅଟକାଇ ପଚାରିଲା--କଥା କ'ଣ ! ଏମିତ ଅତରଛିଆ ହୋଇ ଧାଉଁଛ କୁଆଡ଼େ ?

ଚୃଷୀ କହିଲା—ଦେଶୀ ଆଳୁଟା କହୁଛି ମୋତେ ଖୋଳନା ।

ଗଛ କହେ—ଡ଼ାଳ କାହିଁକି ଭାଙ୍ଗିଲୁ ?
ଡାଳ କହେ—ମୋତେ କାହିଁକି ଫିଙ୍ଗିଲୁ ?
ପଥର କହେ—ମୋ' ଉପରୁ ଡ଼ାଳ ଉଠା ।
ମାଛ ଧରାଳି କହିଲା—ଜାଲ ପଚାରୁଛି, ପଥର ଉପରୁ ଡ଼ାଳ ଉଠାଇଲ ନା ନାହିଁ ?

ଏ କଥା ଶୁଣି ଲୁଗା ବେପାରୀ ଠୋ ଠୋ ହୋଇ ହସିଲା । କହିଲା—ଏଇ କଥାକୁ ଡ଼ରି ତୁମେ ଧାଇଁଛ !

ଏତକ ବେଳେ ଲୁଗା ଗଣ୍ଠିଲି କହିଲା—ତୁମେ ତ ଭାରି ସାହସୀ ! ତୁମେ ବି ଶୁଣିଥିଲେ, ଏମିତ ଛାନିଆଁ ହୋଇ ଧାଇଁଥା'ନ୍ତ ।

ବେପାରୀ ବିଚରା ଭୟରେ ଗଣ୍ଠିଲି ଫୋପାଡ଼ି 'ଇଲୋ-ବୋଉଲୋ' କହି ଦେ ଦଉଡ଼ ।

ତେଣୁ ଆସୁଥିଲା ଜଣେ ଲୋକ ବାଲ୍‌ଟିଏ ପାଣି ଧରି । ଏ ତିନି ଜଣଙ୍କୁ ଅଟକାଇ ପଚାରିଲା—ଏମିତି ଝରବର ହୋଇ କାହିଁକି ଧାଇଁଛ ?

ସେମାନେ ଧଇଁ ସଇଁ ହୋଇ କହିଲେ—
ଦେଶୀ ଆଳୁ କହେ—ଖୋଳନା ମତେ ।
ଗଛ କହେ—ଡ଼ାଳ ଭାଙ୍ଗିଲୁ କାହିଁକି ?
ଡାଳ କହେ—ମୋତେ ଫିଙ୍ଗିଲୁ କାହିଁକି ?
ପଥର କହେ—ମୋ' ଉପରୁ ଡ଼ାଳକୁ ଉଠା ।
ଜାଲ ପଚାରୁଛି—ଡ଼ାଳକୁ ଉଠାଇଲ ନା ନାହିଁ ?
ଗଣ୍ଠିଲି କହୁଛି—ତୁମେ ମଧ୍ୟ ଭୟାଳୁ ।

ବାଲ୍‌ଟି ଧରିଥିବା ଲୋକଟି କହିଲା—ପ୍ରକୃତରେ ତୁମେ ଭୟାଳୁ । ଏଇ ଛାର କଥାକୁ ଶୁଣି ଧାଇଁଛ ?

ଏତକ ବେଳେ ବାଲ୍‌ଟି କହିଲା—
କୁହ ନାହିଁ ବେଶି ବଡେଇ କରି
ତୁମେ ତ ଡ଼ରୁଆ ତାଙ୍କରି ପରି ।

ଆଲୋ ମାଆ ଲୋ, ଖାଇଲା କହି ଲୋକଟା ବାଲ୍‌ଟି ଫିଙ୍ଗି ଦେଇ ସେମାନଙ୍କ ପଛେ ପଛେ ଦୌଡ଼ିଲା । ଶେଷରେ ଯାଇ ସେମାନେ ସର୍ଦ୍ଦାରଙ୍କ ପାଖେ ପହଞ୍ଚିଲେ ।

ସର୍ଦ୍ଦାର ପଚାରିଲା—କରେ, କଥା କ'ଣ ? ତୁମେ ସବୁ ଏପରି ଧଇଁ ସଇଁ ହୋଇ ଆସିଛ କାହିଁକି ?

ଚାଷୀ ତା' କଥା କହିଲା ।
ମାଛ ଧରାଳି ତା' କଥା କହିଲା ।
ଲୁଗା ବେପାରୀ ତା' କଥା କହିଲା ।
ବାଲ୍‌ଟିବାଲା ତା' କଥା କହିଲା ।

ସର୍ଦ୍ଦାର ସବୁ ଶୁଣି ରାଗରେ ଫଁ···ଫଁ ହୋଇ କହିଲା—ତୁମର ମୁଣ୍ଡ ସବୁ ବିଗିଡ଼ି ଗଲାଣି । ଯାଅ ଯାଅ ନିଜ କାମ କର ।

ସେମାନେ ଆଉ କ'ଣ କରିବେ ? ନିଜ ନିଜର କାନ-ମୁଣ୍ଡ ଆଉଁସି ପଳାଇଲେ । ସର୍ଦ୍ଦାର ମନକୁ ମନ କହିହେଲା—ଦେଶୀଆଳୁ କଥା କହୁଛି, ଗଛ କହୁଛି, ଡ଼ାଳ କହୁଛି, ପଥର କହୁଛି, ଗଣ୍ଠିଲି କହୁଛି, ବାଲ୍‌ଟି କହୁଛି, ଯେତେ ସବୁ ବାଜେ କଥା ।

ସର୍ଦ୍ଦାର ଯେଉଁ ଖଟୁଲିରେ ବସିଥିଲା, ସେ ସାଙ୍ଗେ ସାଙ୍ଗେ କହିଲା—ହଁ, ବାଜେ କଥା ନୁହେଁ ତ ଆଉ କ'ଣ ?

ଏ କଥା ଶୁଣି ସର୍ଦ୍ଦାର ଖଟୁଲି ଉପରୁ ଛାନିଆଁରେ ଗଡ଼ି ପଡ଼ିଲା । ତା'ପରେ ଉଠିପଡ଼ି କୁଦାମାରି ଏକ ମୁହାଁ ହୋଇ ଧାଇଁଁଚ ତ ଧାଇଁଚ । ସେମାନେ ଦୌଡ଼ି ଦୌଡ଼ି କୁଆଡ଼େ ଯେ ଗଲେ ଆଉ ଫେରିଲେ ନାହିଁ । କିଏ ଜାଣେ, ହୁଏତ ସେମାନେ ଆଜି ମଧ୍ୟ ଦୌଡ଼ୁ ଥିବେ !!

( ଆଫ୍ରିକାର ଲୋକ କଥା ଛାୟାରେ ଲିଖିତ )






ଜଙ୍ଗଲ ମଝିରେ ମୁଣ୍ଡିଆଟିଏ । ସେ ମୁଣ୍ଡିଆ ଉପରେ ଛୋଟିଆ କୁଡ଼ିଆ ଘରେ ବୁଇ ତା' ଜେଜେ ମା' ସାଙ୍ଗରେ ରହୁଥାଏ । ବୁଇର ବାପା, ମା' ଦିନେ ଜଙ୍ଗଲକୁ କାଠ ହାଣି ଯାଇ ବାଘ ହାବୁଡ଼ରେ ପଡ଼ିଲେ ଯେ ଆଉ ଫେରି ନାହାନ୍ତି । ଏ କଥା ବୁଇ ତା' ଜେଜେ ପାଖରୁ ଶୁଣିଛି ସିନା, କିନ୍ତୁ ତା'ର ମନେ ନାହିଁ ।

ତା'ର ବାପା ମାଆଙ୍କ ମୁହଁ ଏବେ ମନେ ପଡ଼େନା । ବୁଇ ସବୁବେଳେ ଏକୁଟିଆ । ସାଙ୍ଗ ନାହିଁ କି ସାଥି ନାହିଁ । କାହା ସାଙ୍ଗରେ ଟିକେ ଖେଳିବ ! ବେଳେବେଳେ ତା'ର ମନେ ହୁଏ ମୁଣ୍ଡିଆ ତଳେ ଥିବା ଘାସ୍ ପଡ଼ିଆରେ ଟିକେ ଖେଳନ୍ତା । କିନ୍ତୁ ଜେଜିର କଥା ମନେ ପଡ଼ିଯାଏ, ବୁଇ ସାବଧାନ ! କେବେ ସେ ଘାସ ପଡ଼ିଆକୁ ଯିବୁନି । ସେଠି ଶାଗୁଆ ପରୀ ଅଛି । ବୁଇ ଶଙ୍କି ଯାଏ । ମୁଣ୍ଡିଆର ପଶ୍ଚିମ ପଟେ ଗୋଟିଏ ପାହାଡ଼ିଆ ନଈ । ନଈରେ ଗାଧୋଇବାକୁ ବୁଇର ଭାରି ଇଚ୍ଛା ହୁଏ । ଜେଜି କିନ୍ତୁ ମନା କରି ଦିଅନ୍ତି । କହନ୍ତି, ନଈରେ ପରା ଜଳପରୀ ଅଛି । ବୁଇ ଜେଜିଙ୍କ କଥାରେ ଜଳପରୀକୁ ଡରିଯାଏ ସିନା, ହେଲେ ମନଟା ତା'ର ଛଟପଟ ହୁଏ, କେମିତି ଟିକେ ଦେଖନ୍ତା ଜଳପରୀକୁ ।

ଦିନେ ବୁଇର ଭାରି ଇଚ୍ଛା ହେଲା ଶାଗୁଆ ପରୀକୁ ଦେଖିବାକୁ । କେଜି ଯେମିତ ଶୋଇ ପଡ଼ିଛନ୍ତି, ବୁଇ ପାଦ ଚପି ଚପି ମୁଣ୍ଡିଆ ତଳକୁ ଓହ୍ଲାଇ ଗଲା । ସେଠି ପହଞ୍ଚି ଦେଖିଲା ଚାରିଆଡ଼େ ଖାଲି ସୁନ୍ଦର ଫୁଲ ଆଉ ଶାଗୁଆ ଶାଗୁଆ ନରମ ଘାସ । ସେ ଘାସରେ ଆଗେ ପରସ୍ତେ ଗଡ଼ିଗଲା । ତା'ପରେ ଉଠି ଡେଇଁ ଡେଇଁ କା ଫୁଲ ଛିଣ୍ଡାଇବାକୁ ଲାଗିଲା । ଆଠ ଦଶଟା ଫୁଲ ଛିଣ୍ଡାଇଛି କି ନାହିଁ ପଛରୁ କିଏ ଡାକିଲା— କିଏରେ ! ବୁଇ ପଛକୁ ଚାହିଁ ଦେଖେ ଯେ ଜଣେ ସ୍ତ୍ରୀ ଲୋକ ଶାଗୁଆ ଶାଢ଼ି ପିନ୍ଧି ତା' ଆଡ଼କୁ ବଡ଼ ବଡ଼ ଆଖିରେ ଅନେଇଛି । ତା' ବାଁ ହାତରେ ଗୁଡ଼ିଏ ଚାରା ଗଛ ଓ ଡାହାଣ ହାତରେ ଗୋଟିଏ ଖୁରୁପି ।

ଶାଗୁଆ ପରୀଟି ତାକୁ ଚାହିଁ କହିଲା—ଝିଅ, ମୋ' ରାଇଜର ନିୟମ ହେଉଛି, ଯିଏ ଗଛଟିଏ ପୋତିବ, ସିଏ ଫୁଲଟିଏ ତୋଳିବ । ତୁ କେବେ ବି ଗଛଟିଏ ପୋତିନୁ, ଫୁଲଗୁଡ଼ିକ ଛିଣ୍ଡାଉଛୁ କାହିଁକି ?

ବୁଇ କହିଲା, ମୋ ନାଁ 'ବୁଇ' । ବୁଇ ନାଁଟା କହିଲା ବେଳକୁ ଦୋକିଟିଗଣ ଠକ୍ ଠକ୍ ଥରୁଥାଏ । ବୁଇ ଭାବିଲା, ଏଇ ବୋଧେ ଶାଗୁଆ ପରୀ ।

ବୁଇ ଡରମରି କହିଲା—ମୁଁ ତ ଏ କଥା ଜାଣିନି । ମୋତେ ତମେ ଚାରା ଗଛ ଦିଅ । ମୁଁ ପୋତି ଦେବି । ଗଛର ଯତ୍ନ ନେବି । ଏହା କହି ସେ ଶାଗୁଆ ପରୀଠୁ ଗଛ ନେଇ ପୋତି ଦେଲା ।

ଶାଗୁଆ ପରୀଟି ହସି ହସି କହିଲା—ବୁଇ, ତୁ ବଡ଼ ସୁନା ଝିଅ । ତୁ ଏମିତି ମଝିରେ ମଝିରେ ଆସୁଥିବୁ । ଏଠି ଖେଳିବୁ । ତୋର ହସ ହସ ମୁହଁ ଦେଖିଲେ ମୋତେ ଭାରି ଖୁସି ଲାଗୁଛି ।

ତା'ପରେ କେଜି ପ୍ରତି ଦିନ ଶୋଇ ପଡ଼ିଲେ ବୁଇ ଖୁରୁପି ନେଇ ସେଇ ପଡ଼ିଆକୁ ଚାଲିଯାଏ । ସେଠି ପହଞ୍ଚି ହସି ହସି କା ଗୀତ ବୋଲେ—

ଶାଗୁଆ ପରୀ ଗୋ ଶାଗୁଆ ପରୀ
ଆସିଅଛି ମୁହିଁ ଖୁରୁପି ଧରି
ଦିଅ ଚାରା ମୋତେ କେତେ ଜାତିକା
ପୋତି ଦେବି ସବୁ ମୁଁ ଏକା ଏକା ।

ବୁଇର ଗୀତ ନ ସରୁଣୁ ଶାଗୁଆ ପରୀ ନାନା ଜାତିର ଚାରା ଧରି ବୁଇ ପାଖକୁ ଚାଲି ଆସେ । ବୁଇ ହାତରେ ଚାରା ଗଛ ଧରାଇ ଦେଇ କହେ—

ଚାରା ଗଛ ସବୁ ନେ ଲୋ ବୁଇ
ମନ ଇଚ୍ଛା ଗଛ ପୋତି ଯା' ତୁହି
ଫୁଲ ଫୁଟିଯିବ ବାସ ଚହଟିବ
ସଭିଏଁ କହିବେ ସାବାସ୍ ବୁଇ ।

ବୁଇ ଆନନ୍ଦରେ ସେ ଘାସ ପଡ଼ିଆର ଚାରି କଡ଼ରେ ନାନା ଜାତିର ଫୁଲ ଫଳ ଗଛ ପୋତିଯାଏ । ତା'ପରେ ପଡ଼ିଆରେ ଟିକେ ଖେଳାଖେଳି କରି କେଜି ଉଠିବା ପୂର୍ବରୁ ଫେରିଯାଏ ।

ଦିନ ଗଡ଼ି ଚାଲିଲା । ବୁଇ ବଡ଼ ହୋଇ ବାହା ହେଲା । ତା'ର କୁନି କୁନି ତିନୋଟି ପିଲା । ଘରେ କିନ୍ତୁ ବୁଇ ଏକୁଟିଆ । କେଜି କେଉଁ ଦିନୁ ଚାଲି ଗଲେଣି । ଯେମିତି ଚାରିଟା ବାଜିଯାଏ, ଖରା ଟିକେ ନଇଁ ଯାଏ, ବୁଇ ତା' ପିଲାଙ୍କୁ ସଫା ଜାମାପଟା ପିନ୍ଧାଇ ଦେଇ କହେ—ଯାଅରେ ପିଲାଏ, ମନ ଇଚ୍ଛା ପଡ଼ିଆରେ ଖେଳିବ । ହେଲେ ଗୋଟିଏ କଥା ସବୁବେଳେ ମନେ ରଖିବ । ଫୁଲଟିଏ ଛିଣ୍ଡାଇଲେ, ଗଛଟିଏ ପୋତିବ । ଏ କଥା ଯେପରି ଭୁଲି ନ ଯାଅ । ସନ୍ଧ୍ୟା ହେଲେ ପିଲାଏ ହାତରେ ଫୁଲ ଧରି ନାଚି ନାଚି ଫେରନ୍ତି । ତା' ଦେଖି ବୁଇର ଛାତି କୁଣ୍ଢେ ମୋଟା ହୋଇଯାଏ । ଏବେ ସେ ପାଖରେ ଅନେକ ସୁନ୍ଦର ଗଛ । ସେ ସବୁ ଲଗେଇଥିଲା ବୁଇ ।



# କୋକିର ପାଠ ପଢା

ସମୁଦ୍ରରେ ଠାଏ ସିଲ୍‌ମାଛଟିଏ ଥାଏ । ସେ ସକାଳୁ କୂଳକୁ ଆସି ଖରା ପୁଏଁ । ଦିନସାରା ସମୁଦ୍ରରୁ ମାଛ ମାରି ଖାଏ । ସମୁଦ୍ରରେ ତ ବହୁତ ମାଛ । ସିଲ୍ ମାଛ ଭାରି ଖୁସି । ଦିନସାରା ପେଟ କେବେ ଖାଲି ରହୁନ । ବୁଲୁ ବୁଲୁ ଦିନେ ସେ ଗୋଟିଏ କାଉ ଦେଖିଲା ।

ସିଲ୍‌ମାଛ କାଉକୁ ଡାକି କହିଲା—କୁହିଲୁ କାଉ, ତୁ ଏଣେ ତେଣେ ଖୁମ୍ପି ଖୁମ୍ପି ଖାଉଛୁ । ଯଦି ମୋ' ପରି ସିଲ୍‌ମାଛ ହୋଇ ଥାଆନ୍ତୁ ନା, ତେବେ କେତେ ମଜାରେ ମାଛ ଖାଇ ବୁଲନ୍ତୁ । ତୁ ମାଛ ପାଇବୁ କୁଆଡ଼ୁ ? ମତେ ତୋ' କଥା ଭାବିଲା ବେଳକୁ ଭାରି ଦୁଃଖ ଲାଗୁଛି ।

ଆଉ ଦିନେ ସିଲ୍‌ମାଛ ଗୋଟିଏ ଠେକୁଆକୁ ଡାକି କହିଲା—ତୁ ଖାଲି ଖାଉଛୁ ହିଁ ନା, ଟିକିଏ ତ ମୋଟା ହୋଇନୁ ! ଦେଖିଲୁ ମୋତେ, ମୁଁ କିପରି ମାଛ ଖାଇଖାଇ ମୋଟା ହୋଇଛି । ତୋ' ଦେହ ତ ହାଡ଼ କଣ୍ଟାପରି ଦିଶୁଛି । ତୁ ଯଦି ମୋ'ପରି ସିଲ୍‌ମାଛ ହୋଇ ଥାଆନ୍ତୁ ନା, କେତେ ମାଛ ଖାଇ ମଜାରେ ବୁଲୁଥା'ନ୍ତୁ । ଏମିତି ସିଲ୍‌ମାଛ ଯାହାକୁ ଦେଖିଲା, ତା' ସହ ଗପ ଯୋଡ଼ିଦେଲା ।

କୋକଣିଆଳଟିଏ ସେଇ ସମୁଦ୍ରଠାରୁ ଅଳ୍ପ ଦୂରରେ ରହୁଥାଏ । ଗୋଟିଏ ଲତାବୁଦା ମୂଳେ ତା' ଘର । ସେ ମୂଷା ଓ ଚଢ଼େଇ ଅଣ୍ଡା ଖାଏ । ସିଲ୍‌ମାଛ ପାଖକୁ ମୋଟେ ଯାଏନି । ସିଲ୍‌ମାଛ ବି ତା' ସହିତ କମା କଥାବାର୍ତ୍ତା କରେନି ।

ଗ୍ରୀଷ୍ମ ଯାଏ । ବର୍ଷା ଯାଏ । କୋକଣିଆଳ ଦିନେ ହେଲେ ସିଲ୍‌ମାଛ ଆଡ଼କୁ ନଜର ଦିଏନା । ଥରେ ଶୀତ ଦିନ ହୋଇଥାଏ । ଭାରି କାଡ଼ ପଡୁଥାଏ । କୋକି କେଉଁଆଡ଼େ ଚଢ଼େଇର ଅଣ୍ଡା କି ମୂଷାଟିଏ ପାଇଲା ନାହିଁ । ଚୈତ୍ରଆଡ଼େ ଖାଲି ବରଫ ଆଉ ବରଫ । ମୋଟା ସିଲ୍‌ମାଛକୁ ଦେଖି ତା' ପାଟିରୁ ଲାଳ ବୋହିଲା । କିନ୍ତୁ ସିଲ୍‌ତ ଏଡ଼େ ମୋଟା ! ତାକୁ କେମିତି ଅବା ସେ ଖାଇବ ? ଏମିତି ଭାବୁଭାବୁ ହଠାତ୍ ତା' ଆଖି ସିଲ୍ ଛୁଆଗୁଡ଼ିକ ଉପରେ ପଡ଼ିଗଲା । କୂଳରୁ କିଛି ଦୂରରେ ଖଣ୍ଡିଏ ବରଫ ଭାସୁଥାଏ । ତା ଉପରେ ସିଲ୍‌ଛୁଆ-ମାନେ ଖେଳୁଥା'ନ୍ତି । ଛୁଆଗୁଡ଼ିକ ପାଖକୁ କେମିତି ଯିବ ! ଏଇ କଥା ମନେ ମନେ ଭାବି ସେ ସିଲ୍‌ମାଛ ପାଖକୁ ଗଲା । ତାପରେ ସେ ସିଲ୍‌ମାଛକୁ ଡ଼ାକି କହିଲା—

'ସିଲ୍ ଭାଇରେ ସିଲ୍ ଭାଇ !
ମୋତେ କ'ଣ କଥା କହିବ ନାହିଁ ?
ରୂପଟି ତମର ଦେଡ଼େ ସୁନ୍ଦର;
ଦେଖି ଦେଲେ ପେଟ ପୁରୁଛି ମୋର
ତୁମ ସଙ୍ଗେ ବନ୍ଧୁ ବାନ୍ଧିବା ପାଇଁ,
ଆସିଛି ମୁଁ ତୁମ ପାଖକୁ ଧାଇଁ ।'

ଏହି ଗୀତ ଗାଇଗାଇ କୋକି ନାଚିବାକୁ ଲାଗିଲା ।

ସିଲ୍ କହିଲା—ଭାରି ଅଜବ କଥାତ ! ତୁମେ ମତେ କାହିଁକି ଆଜି ଡ଼ାକୁଛ ? କୋକଣିଆଳ କହିଲା—

'ସିଲ୍ ଭାଇ ତୁମେ ବଡ଼ ଚତୁର
କଥାଟି ତୁମର କେଡ଼େ ମଧୁର ।
ତୁମଠାରୁ ଗଣା ଶିଖିବା ପାଇଁ
ବାଇ ହୋଇ ମୁଁ ଯେ ଆସିଛି ଧାଇଁ ।'

ସିଲ୍ ମନେମନେ ଭାବିଲା—'ମୁଁ ଆଜିଯାଏଁ ଜାଣିଥିଲି କୋକି ବଡ଼ ଚତୁର । କିନ୍ତୁ ସେ ଗଣି ଜାଣେ ନାହିଁ । ଯେତେବେଳେ ମୋ' ପାଖକୁ ଆସିଛି, ତାକୁ ଗଣା ଶିଖାଇଲେ କ୍ଷତି କ'ଣ ?

ତା'ପରେ ସେ ତାକୁ ଡାକି କହିଲା - 'ଏ କ'ଣ ବଡ଼ କଥା ! ତୁମେ ଯେତେବେଳେ ମୋ' ପାଖକୁ ଆସିଛ, ତୁମକୁ ଗଣା ଶିଖାଇବିନି ତ ଏ କାମ ଆଉ କିଏ କରିବ ? କୁହ, 'ଏକ' ।

କୋକିଶିଆଳି କ'ଣ କଲା ନା ସିଲ୍‌ମାଛ ମୁଣ୍ଡ ଉପରେ ଗୋଡ଼ ରଖି କହିଲା—'ଏକ' । ସିଲ୍ କହିଲା—କୁହ 'ଦୁଇ' । କୋକିଶିଆଳି କହିଲା—'ଦୁଇ' । ସେ ପାଦକୁ ଯେମିତି ପାଣିକୁ ବଢ଼ାଇ ଦେଇଛି, ହେମ ଶୀତଳ ପାଣିରେ ଗୋଡ଼ ବାଜିବାରୁ କୋକିଶିଆଳି କହିଲା—'ମରିଗଲି ! ମରିଗଲି !' ସିଲ୍‌ମାଛ କହିଲା—'କ'ଣ ହେଲା, ଏମିତି ପାଟି କରୁଛ କାହିଁକି ?'

କୋକିଶିଆଳି କହିଲା—'ଆରେ ବାପରେ ବାପ୍, ପାଣି କି ଥଣ୍ଡା ! ମୋ' ପାଦ କାଠ ହୋଇଗଲା ।'

ସିଲ୍ କହିଲା—'ଛି ··· ଛି··· ତୁମେ ପାଣିକୁ ଏତେ ଡ଼ରୁଛ ? ତମେ ସିଲ୍‌ମାଛ ହୋଇଥିଲେ ଭଲ ହୋଇଥା'ନ୍ତା । ଆଚ୍ଛା······ପାଦଟିକୁ ଶୁଖାଇ ଦିଅ ।' କିଛି ସମୟ ପରେ ପୁଣି ସିଲ୍ କହିଲା—'ଆସ ଏଥର ପୁଣି ଗଣିବା ଆରମ୍ଭ କରିବା, 'ଏକ' 'ଦୁଇ' ।

କୋକଣିଆଳ' 'ଏକ' କହି 'ଦୁଇ' କହିଲା ବେଳେ ପୁଣି ପାଟି କଲା । ସିଲ୍ କହିଲା—ପୁଣି କାହିଁକି ଏମିତ ପାଟି କରୁଛ ?'

କୋକ କହିଲା—'ପାଟି କରିବ ନାହିଁ ! ମୋ ଗୋଡ଼ କାଲୁଆ ହୋଇ ଯାଉଛି ।'

ସିଲ୍ କହିଲା—'ତୁମେ ପାଣିରେ କାହିଁକି ପାଦ ଦେଉଛ ?'

କୋକଣିଆଳ କହିଲା—ଦୁଇଟିରୁ ତ ଗୋଟିଏ ପାଦ ତୁମ ଉପରେ, ଆଉ ଗୋଟିଏ ପାଦ କେଉଁଠି ରଖିବି ?'

ସିଲ୍ କହିଲା—'ରୁହ, ମୋ ସାଙ୍ଗମାନଙ୍କୁ ଡାକି ଆଣୁଛି ।' ଏହା କହି ସେ ତାର ଅନେକଗୁଡ଼ିଏ ସିଲ୍ ସାଙ୍ଗକୁ ଡାକି ଆଣି ଧାଡ଼ିକରି ଛିଡ଼ା କରିଦେଲା । ଏଥର କୋକଣିଆଳ ଗୋଟିଏ ପରେ ଗୋଟିଏ ସିଲ୍ ଉପରେ ପାଦଦେଇ ସେହି ବରଫଖଣ୍ଡ ଆଡ଼କୁ ଆଗେଇଲା । ତା'ପରେ ସେ ବରଫ ଉପରେ ଚଢ଼ିଗଲା । ତା' ପରେ ସିଲ୍ ମାଛକୁ କହିଲା—'ଏବେ ମୁଁ ୧ ରୁ ୯ ପର୍ଯ୍ୟନ୍ତ ଗଣା ମୁଖସ୍ଥ କରୁଛି ।'

ପ୍ରଥମ ସିଲ୍ ମାଛଟି କହିଲା—'ଚାଲ, ସେ ଗଣୁ ଥାଉ, ଆମକୁ ଡାକିଲେ ପୁଣି ଆମେ ଆସିବା'—ଏହା କୁହାକୁହି ହୋଇ ସେମାନେ ଚାଲିଗଲେ ।

କୋକଣିଆଳ ଏଇ ସୁଯୋଗ ଖୋଜୁଥିଲା । ସେ କାଳ ବିଳମ୍ବ ନ କରି ତିନି ଚାରୋଟି ସିଲ୍ ଛୁଆଙ୍କୁ ଜଳଖିଆ କରିଦେଲା । ପେଟ ପୂରିଯିବାରୁ ଆସି ଡାକିଲା—'ସିଲ୍-ଭାଇମାନେ, ମୁଁ ଗଣା ଶିଖିଗଲି ।'

ସିଲ୍ ମାନେ ପୁଣି ଆସି ଧାଡ଼ି ହୋଇ ଠିଆ ହୋଇ-ଗଲେ । କୋକିଣିଆଳ ସେମାନଙ୍କ ମୁଣ୍ଡ ଉପରେ ଏକରୁ ନ'

ପର୍ଯ୍ୟନ୍ତ ଗଣି ଗଣି କୂଳକୁ ଡ଼ିଆଁ ମାରିଲା । ସେଇଠି ଠିଆହୋଇ କହିଲା—'ବହୁତ ଧନ୍ୟବାଦ, ତୁମେ ମୋତେ ଗଣା ଶିଖାଇ ଦେଲ ।'

ସିଲ୍ ଭାଇ ତୁମେ ଗୁରୁ ମୋହର
ଯାଉଛି ମେଲାଣି ଦିଅ ଏଥର !
ଶିଖାଇଛ ଗଣା ଭୁଲିବ ନାହିଁ
ଭୁଲିଗଲେ ପୁଣି ଆସିବ ଧାଇଁ ।'

ଏହା କହି ସେ ଲାଙ୍ଗୁଡ଼ ହଲାଇ ଆନନ୍ଦରେ ଚାଲିଗଲା । ସେଇ ମୋଟା ସିଲ୍‌ଟି ମନେ ମନେ ଭାବିଲା—ଯାହାହେଉ, କୋକିଶିଆଳଟି ମୋ ଯୋଗୁଁ ଗଣା ଶିଖିଗଲା ! ମୁଁ ତା'ର ଗୁରୁ ହୋଇଗଲି । ଏ କ'ଣ କମ୍ ଭାଗ୍ୟର କଥା ! କିନ୍ତୁ ସେ ମୂର୍ଖ ଜାଣି ପାରିଲା ନାହିଁ ଯେ କୋକିଶିଆଳଟି କେତେ ଗୁଡ଼ାଏ ସିଲ୍ ଛୁଆଙ୍କୁ ଖାଇ ଚାଲିଯାଇଛି ।






ଭାରତ ମାନଚିତ୍ରରେ ଖୋଜିଲେ ତୁମେ ଦେଖିବ ଦକ୍ଷିଣ ଭାରତର କାବେରୀ ନଦୀ କୂଳରେ ଗୋଟିଏ ବଡ଼ ସହର ଅଛି । ତା ନାଁ ତ୍ରିଚିରାପଲ୍ଲୀ । ସେ ସହର ମଝିରେ ଗୋଟିଏ ପାହାଡ଼ । ପାହାଡ଼ ଉପରେ ଗୋଟିଏ ମନ୍ଦିର । ଲୋକେ ନିତି ସେହି ମନ୍ଦିରକୁ ପୂଜା କରିବାକୁ ଯାଆନ୍ତି ।

ଅନେକ ଦିନ ତଳେ ତ୍ରିଚିରାପଲ୍ଲୀରେ ଜଣେ ରାଜା ଥିଲେ । ସେ ବଡ଼ ଖାମଖିଆଲି ସ୍ୱଭାବର । ତାଙ୍କ ଇଚ୍ଛା ସେ ଯାହା କହିବେ, ମନ୍ତ୍ରୀମାନେ ମାନିବାକୁ ବାଧ୍ୟ ।

ଦିନେ ସଂଧ୍ୟା ବେଳେ ରାଜା କାବେରୀ ନଈ କୂଳେ ବୁଲୁବୁଲୁ ମନ୍ତ୍ରୀଙ୍କୁ ପଚାରିଲେ - ଏ ନଈ ପାଣି କୁଆଡ଼େ ଯାଉଛି ? ମନ୍ତ୍ରୀ କହିଲେ, ଆମ ଦେଶର ପୂର୍ବ ପଟେ ଥିବା ତାଞ୍ଜୋରକୁ ଯାଉଛି । ରାଜା ରାଗିଯାଇ କହିଲେ—କ'ଣ ଏ ସବୁ ପାଣି ତାଞ୍ଜୋରର ଲୋକମାନେ ପାଉଛନ୍ତି ? ସେମାନେ କାହିଁକି ଆମଠାରୁ ବେଶୀ ପାଣି ପାଇବେ ? କାଲି ସକାଳୁ ନଦୀରେ ବନ୍ଧ ବାନ୍ଧି ସବୁ ପାଣିକୁ ଅଟକାଇ ଦିଅ ।

ରାଜାଙ୍କ ଆଦେଶ ଶୁଣି ହଜାର ହଜାର ଲୋକ କାମରେ ଲାଗି ପଡ଼ିଲେ । ଦେଖୁ ଦେଖୁ ବନ୍ଧା ହୋଇଗଲା ବନ୍ଧଟିଏ । ବନ୍ଧ ବନ୍ଧା ହେବା ଫଳରେ ସେ ସହରର ଚାରିଆଡ଼େ ପାଣି ପଶିଗଲା । ରାସ୍ତାଘାଟ ସବୁ ପାଣିରେ ବୁଡ଼ିଗଲା । ଲୋକେ ପ୍ରାଣ ବିକଳରେ ମନ୍ତ୍ରୀଙ୍କ ନିକଟକୁ ଧାଇଁଲେ । ମନ୍ତ୍ରୀ ଗୋଟିଏ ଉପାୟ ଚାହିଁଲେ । ରାଜାଙ୍କ ନଅରରେ ଜଣେ ଲୋକ ପ୍ରତି ଦିନ ଘଣ୍ଟା ବଜାଏ । ସେ ଘଣ୍ଟା ଶବ୍ଦ ଶୁଣି ସହରର ସବୁ ଲୋକ ସମୟ ଜାଣି ପାରନ୍ତି ।

ମନ୍ତ୍ରୀ ତାକୁ ଡାକି କହିଲେ—ଆଜି ରାତିରେ ଠିକ୍ ଗୋଟାଏ ବେଳେ ତୁମେ ଛଅ ଥର ଘଣ୍ଟା ବଜାଇବ । ଘଣ୍ଟା-ବାଲା ମନ୍ତ୍ରୀଙ୍କ କଥା ମାନି ପ୍ରତି ଅଧ ଘଣ୍ଟାରେ ଗୋଟିଏ ଘଣ୍ଟା ବଜାଇ ରାତି ଗୋଟାଏ ବେଳକୁ ଛଅଥର ଘଣ୍ଟା ବଜାଇ ଦେଲା ।

ସାଧାରଣତଃ ଛଅଟାରେ ସକାଳ ହୁଏ । ତେଣୁ ଛଅଥର ଘଣ୍ଟା ଶବ୍ଦ ଶୁଣି ସମସ୍ତେ ସକାଳ ହେଲା ଭାବି ରାଜା ଓ ସହ-ରର ଲୋକେ ଉଠି ପଡ଼ିଲେ । ଦେଖିଲାବେଳକୁ ଚାରିଆଡ଼େ କଟିକଟି ଅନ୍ଧାର । ତା' ଦେଖି ସମସ୍ତେ ଆଶ୍ଚର୍ଯ୍ୟ ! କ'ଣ ଛଅଟା ବାଜିଲାଣି, ସୂର୍ଯ୍ୟଙ୍କର ଦେଖା ଦର୍ଶନ ନାହିଁ । ରାଜା ମନ୍ତ୍ରୀଙ୍କୁ ଡକାଇ ପଚାରିଲେ, 'ସୂର୍ଯ୍ୟ କାହିଁ ଦିଶୁନାହାନ୍ତି ?' ମନ୍ତ୍ରୀ କହିଲେ—ମହାରାଜ ! ଆମେ ତାଞ୍ଜୋରକୁ ପାଣି ଛାଡ଼ିଲୁ ନାହିଁ । ତେଣୁ ତାଞ୍ଜୋର ଲୋକେ ରାଗି ସୂର୍ଯ୍ୟଙ୍କୁ ଅଟକାଇ ଦେଇଛନ୍ତି । ତାଞ୍ଜୋର ଲୋକେ ଛାଡ଼ିଲେ ଯାଇ ସୂର୍ଯ୍ୟ ଉଇଁବେ ! ରାଜା କହିଲେ ତା'ହେଲେ ବନ୍ଧ ଭାଙ୍ଗି ଦିଅ । ପୂର୍ବ ଦିଗକୁ ସବୁ ପାଣି ବହିଯାଉ । ସଙ୍ଗେ ସଙ୍ଗେ ବନ୍ଧ ଭଙ୍ଗା କାମ ଆରମ୍ଭ ହେଲା । ରାତି ପାହିଲା ବେଳକୁ ବନ୍ଧ ଭଙ୍ଗା କାମ ସରି ସବୁ ପାଣି ତାଞ୍ଜୋର ଆଡ଼କୁ ବହିଗଲା । ସେତେବେଳେ ଠିକ୍ ସୂର୍ଯ୍ୟ ଉଇଁ ଆସୁଥିଲେ । ଲୋକମାନେ ମନ୍ତ୍ରୀଙ୍କ ବୁଦ୍ଧିକୁ ତାରିଫ ନ କରି ରହି ପାରିଲେ ନାହିଁ । କିନ୍ତୁ ରାଜା ଏ ସବୁ କିଛି ଜାଣି ପାରିଲେ ନାହିଁ ।



# ଆଶ୍ଚର୍ଯ୍ୟ ଖଟିଆ

ମହାରାଜା ସମୁଦ୍ରଗୁପ୍ତଙ୍କ ଜନ୍ମ ଦିନ । ରାଜା ସଭାରେ ବସିଥାନ୍ତି । ପ୍ରଜାମାନେ ନାନା ଦାମିକା ଉପହାର ଆଣି ରାଜାଙ୍କୁ ଭେଟି ଦେଉଥାନ୍ତି । ଜଣେ ଗରୀବ ବଢ଼େଇ ଗୋଟିଏ ଖଟିଆ ମୁଣ୍ଡରେ ମୁଣ୍ଡାଇ ଆଣି ସଭାରେ ରଖିଲା । ଲୋକମାନେ ଖଟିଆ ଦେଖି ନିଜ ଭିତରେ ଠାରାଠାରି ହେଲେ । ରାଜାଙ୍କ ହାତୀଦାନ୍ତ ପଲଙ୍କ ଥାଉଥାଉ ଏ ଲୋକ ଖଟିଆ ଉପହାର ଆଣିଛି !

ବଢ଼େଇ ମହାରାଜାଙ୍କୁ କହିଲା—ମହାରାଜ, ଆଜି ଆପଣ ବହୁତ ମୂଲ୍ୟବାନ ଉପହାର ପାଇଛନ୍ତି । ମୁଁ ଜଣେ ଗରିବ ବଢ଼େଇ । ନିଜ ହାତରେ ମୁଁ ଏ ଖଟିଆ ତିଆରି କରି ଆଣିଛି । ଆପଣ ଦୟାକରି ମୋର ଏଇ ଛୋଟ ଉପହାର ଗ୍ରହଣ କରନ୍ତୁ ।

ସମୁଦ୍ରଗୁପ୍ତ ଅନ୍ୟାନ୍ୟ ଦାମିକା ଜିନିଷ ଗ୍ରହଣ କଲାପରି ସେ ଖଟିଆଟିକୁ ମଧ୍ୟ ଗ୍ରହଣ କଲେ । ବଢ଼େଇ ରାଜାଙ୍କର ବ୍ୟବହାର ଦେଖି ଆନନ୍ଦରେ କହିଲା—ମହାରାଜାଙ୍କ ଜୟ ହେଉ ! ହେଲେ ମଣିମା, ମୋର ଗୋଟିଏ ଗୁହାରି ଅଛି ।

ରାଜାଙ୍କ ଆଦେଶ ଶୁଣି ହଜାର ହଜାର ଲୋକ କାମରେ ଲାଗି ପଡ଼ିଲେ । ଦେଖୁ ଦେଖୁ ବନ୍ଧା ହୋଇଗଲା ବନ୍ଧଟିଏ । ବନ୍ଧ ବନ୍ଧା ହେବା ଫଳରେ ସେ ସହରର ମୁହଁଆଡ଼େ ପାଣି ପଶିଗଲା । ରାସ୍ତାଘାଟ ସବୁ ପାଣିରେ ବୁଡ଼ିଗଲା । ଲୋକେ ପ୍ରାଣ ବିକଳରେ ମନ୍ତ୍ରୀଙ୍କ ନିକଟକୁ ଧାଇଁଲେ । ମନ୍ତ୍ରୀ ଗୋଟିଏ ଉପାୟ ପାଞ୍ଚିଲେ । ରାଜାଙ୍କ ନଅରରେ ଜଣେ ଲୋକ ପ୍ରତି ଦିନ ଘଣ୍ଟା ବଜାଏ । ସେ ଘଣ୍ଟା ଶବ୍ଦ ଶୁଣି ସହରର ସବୁ ଲୋକ ସମୟ ଜାଣି ପାରନ୍ତି ।

ମନ୍ତ୍ରୀ ତାକୁ ଡାକି କହିଲେ—ଆଜି ରାତିରେ ଠିକ୍ ଗୋଟାଏ ବେଳେ ତୁମେ ଛଅ ଥର ଘଣ୍ଟା ବଜାଇବ । ଘଣ୍ଟା-ବାଲା ମନ୍ତ୍ରୀଙ୍କ କଥା ମାନି ପ୍ରତି ଅଧ ଘଣ୍ଟାରେ ଗୋଟିଏ ଘଣ୍ଟା ବଜାଇ ରାତି ଗୋଟାଏ ବେଳକୁ ଛଅଥର ଘଣ୍ଟା ବଜାଇ ଦେଲା ।

ସାଧାରଣତଃ ଛଅଟାରେ ସକାଳ ହୁଏ । ତେଣୁ ଛଅଥର ଘଣ୍ଟା ଶବ୍ଦ ଶୁଣି ସମସ୍ତେ ସକାଳ ହେଲା ଭାବି ରାଜା ଓ ସହ-ରର ଲୋକେ ଉଠି ପଡ଼ିଲେ । ଦେଖିଲାବେଳକୁ ଚାରିଆଡ଼େ କଟିକଟି ଅନ୍ଧାର । ତା' ଦେଖି ସମସ୍ତେ ଆଶ୍ଚର୍ଯ୍ୟ ! କ'ଣ ଛଅଟା ବାଜିଲାଣି, ସୂର୍ଯ୍ୟଙ୍କର ଦେଖା ଦର୍ଶନ ନାହିଁ । ରାଜା ମନ୍ତ୍ରୀଙ୍କୁ ଡକାଇ ପଚାରିଲେ, 'ସୂର୍ଯ୍ୟ କାହିଁ ଦିଶୁନାହାନ୍ତି ?' ମନ୍ତ୍ରୀ କହିଲେ—ମହାରାଜ ! ଆମେ ତାଞ୍ଜୋରକୁ ପାଣି ଛାଡ଼ିଲୁ ନାହିଁ । ତେଣୁ ତାଞ୍ଜୋର ଲୋକେ ରାଗି ସୂର୍ଯ୍ୟଙ୍କୁ ଅଟକାଇ ଦେଇଛନ୍ତି । ତାଞ୍ଜୋର ଲୋକେ ଛାଡ଼ିଲେ ଯାଇ ସୂର୍ଯ୍ୟ ଉଇଁବେ ! ରାଜା କହିଲେ ତା'ହେଲେ ବନ୍ଧ ଭାଙ୍ଗି ଦିଅ । ପୂର୍ବ ଦିଗକୁ ସବୁ ପାଣି ବହିଯାଉ । ସଙ୍ଗେ ସଙ୍ଗେ ବନ୍ଧ ଭଙ୍ଗା କାମ ଆରମ୍ଭ ହେଲା । ରାତି ପାହିଲା ବେଳକୁ ବନ୍ଧ ଭଙ୍ଗା କାମ ସରି ସବୁ ପାଣି ତାଞ୍ଜୋର ଆଡ଼କୁ ବହିଗଲା । ସେତେବେଳେ ଠିକ୍ ସୂର୍ଯ୍ୟ ଉଇଁ ଆସୁଥିଲେ । ଲୋକମାନେ ମନ୍ତ୍ରୀଙ୍କ ବୁଦ୍ଧିକୁ ତାରିଫ ନ କରି ରହି ପାରିଲେ ନାହିଁ । କିନ୍ତୁ ରାଜା ଏ ସବୁ କିଛି ଜାଣି ପାରିଲେ ନାହିଁ ।



# ଆଶ୍ଚର୍ଯ୍ୟ ଖଟିଆ

ମହାରାଜା ସମୁଦ୍ରଗୁପ୍ତଙ୍କ ଜନ୍ମ ଦିନ । ରାଜା ସଭାରେ ବସିଥାନ୍ତି । ପ୍ରଜାମାନେ ନାନା ଦାମିକା ଉପହାର ଆଣି ରାଜାଙ୍କୁ ଭେଟି ଦେଉଥାନ୍ତି । ଜଣେ ଗରୀବ ବଢ଼େଇ ଗୋଟିଏ ଖଟିଆ ମୁଣ୍ଡରେ ମୁଣ୍ଡାଇ ଆଣି ସଭାରେ ରଖିଲା । ଲୋକମାନେ ଖଟିଆ ଦେଖି ନିଜ ଭିତରେ ଠରାଠରି ହେଲେ । ରାଜାଙ୍କ ହାତୀଦାନ୍ତ ପଲଙ୍କ ଥାଉଥାଉ ଏ ଲୋକ ଖଟିଆ ଉପହାର ଆଣିଛି !

ବଢ଼େଇ ମହାରାଜାଙ୍କୁ କହିଲା—ମହାରାଜ, ଆଜି ଆପଣ ବହୁତ ମୂଲ୍ୟବାନ ଉପହାର ପାଇଛନ୍ତି । ମୁଁ ଜଣେ ଗରିବ ବଢ଼େଇ । ନିଜ ହାତରେ ମୁଁ ଏ ଖଟିଆ ତିଆରି କରି ଆଣିଛି । ଆପଣ ଦୟାକରି ମୋର ଏଇ ଛୋଟ ଉପହାର ଗ୍ରହଣ କରନ୍ତୁ ।

ସମୁଦ୍ରଗୁପ୍ତ ଅନ୍ୟାନ୍ୟ ଦାମିକା ଜିନିଷ ଗ୍ରହଣ କଲାପରି ସେ ଖଟିଆଟିକୁ ମଧ୍ୟ ଗ୍ରହଣ କଲେ । ବଢ଼େଇ ରାଜାଙ୍କର ବ୍ୟବହାର ଦେଖି ଆନନ୍ଦରେ କହିଲା—ମହାରାଜାଙ୍କ ଜୟ ହେଉ ! ହେଲେ ମଣିମା, ମୋର ଗୋଟିଏ ଗୁହାରି ଅଛି ।

ଆପଣ ଚୋଟିଏ ରାତ ଏଇ ଗଦୀରେ ଖଟିଆରେ ଶୋଇବେ । ତା' ହେଲେ ମୋ ପରିଶ୍ରମ ସାର୍ଥକ ହେବ । ଏତକି କହି ବଢ଼େଇଟି ଚାଲିଗଲା ।

ରାଜାଙ୍କ ଭଣ୍ଡାର ଘରେ ସବୁ ଉପହାର ଜିନିଷ ସଜାଇ ରଖି ଦିଆଗଲା । ଖଟିଆଟା ବି ଗୋଟାଏ କଣରେ ରଖା ହୋଇଥାଏ । ଏମିତି କେତେଦିନ ଚାଲିଗଲା । ଦିନେ ରାଜାଙ୍କର ସେ ବଢ଼େଇ କଥା ମନେ ପଡ଼ିଗଲା । ସେ ଖଟିଆ ଉପରେ ତାଙ୍କର ଶେଯ ପାରିବାକୁ କହିଲେ । ଦାସୀମାନେ ଶେଯ ପାରିଲା ବେଳେ ଭାବିଲେ, 'ରାଜାଙ୍କର ଏ ପୁଣି ଗୋଟାଏ ସଉକ । ହାତୀଦାନ୍ତ ପଲଙ୍କରେ ଶୋଇ ଶୋଇ ତିକ୍ତା ଲାଗିଲାଣି । ତେଣୁ ଖଟିଆରେ ଶୋଇବାକୁ ବୋଧେ ମନ ବଳାଇଛନ୍ତି, ହେଲେ ରାଜାଙ୍କୁ ବା କିଏ ପଚାରିବ ତାଙ୍କର ଏ ଅଦ୍ଭୁତ ଖିଆଲ କାହିଁକି ହେଲା !

ଶେଯ ପଡ଼ିଲା । ରାଜା ରାତିରେ ସେ ଖଟିଆ ଉପରେ ଶୋଇଲେ । ତାଙ୍କୁ ନିଦ ଲାଗି ଆସୁଥାଏ । ହଠାତ ଖଟିଆଟା ଦୋହଲି ଗଲା । ରାଜାଙ୍କ ନିଦ ଚାଉଁକିନା ଭାଙ୍ଗି ଗଲା । ସେ ଶୁଣିଲେ କିଏ ସବୁ କଥାବାର୍ତ୍ତା ହେଉଛନ୍ତି । ରାଜା କାନେଇଲେ । ଖଟର ଚାରୋଟି ଗୋଡ଼ କଥାବାର୍ତ୍ତା ହେଉଛନ୍ତି । ଜଣେ ଅନ୍ୟମାନଙ୍କୁ ପଚାରିଲା, କ'ଣ ବୁଲି ଯିବା ନାହିଁ ? ହଁ ହଁ ନ ଯିବା କାହିଁକି ? ତା'ପରେ ପୁଣି ଖଟିଆଟି ଟିକେ ଦୋହଲି ସେଥିରୁ ଗୋଟିଏ ଗୋଡ଼ ବାହାରି ଚାଲିଗଲା । କିଛି ସମୟ ପରେ ସେ ଫେରି ଆସିବାରୁ, ଅନ୍ୟ ଗୋଡ଼ଗୁଡ଼ିକ ପଚାରିଲେ, କ'ଣ ଦେଖି ଆସିଲ ?

ପ୍ରଥମ ଗୋଡ଼ କହିଲା, ଆରେ ଭାଇ, ମୁଁ ଗଲବେଳକୁ ରାଜାଙ୍କର ଭଣ୍ଡାରରେ ଚୋରମାନେ ସିନ୍ଧି ଖୋଲୁଛନ୍ତି । ଏଇନେ ସବୁ ଧନ ରତ୍ନ ଚୋରୀ ହୋଇଯିବ । ଚୌକିଦାରମାନେ

ଜ୍ଞଯୋଦ୍ଧା ନଦରେ ପୋଉଛନ୍ତି । ମୁଁ ଉତ୍ତର ହୋଇ ଫେରି ଆସିଲି ।

ରାଜା ଏ କଥା ଶୁଣି ଧଡ଼ପଡ଼ ହୋଇ ଉଠି ବସିଲେ । ଠିକ୍ ସେତିକିବେଳେ ଆଉ ଗୋଟିଏ ଗୋଡ଼ କହିଲା, ଏଥର ମୁଁ ଟିକେ ବୁଲି ଆସେ । ରାଜା ଆଉ ବାହାରକୁ ନ ଯାଇ ବସି ରହିଲେ ।

ଦ୍ୱିତୀୟ ଗୋଡ଼ ଯାଇ ଅଳ୍ପ ସମୟ ଭିତରେ ଫେରି ଆସି କହିଲା—ବୁଝିଲ ଭାଇମାନେ, ରାଜମନ୍ତ୍ରୀ ଚନ୍ଦ୍ରପ୍ରଭା ଘରେ ସେନାପତି ନାଚ ଦେଖୁଛନ୍ତି ଓ ଅନ୍ୟ ଏକ ପଡ଼ୋଶୀ ରାଜ୍ୟର ଗୁପ୍ତଚରଙ୍କ ସହିତ ରାଜାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଛନ୍ତି ।

ତା' କଥା ଶେଷ ନ ହେଉଣୁ ତୃତୀୟ ଗୋଡ଼ ବାହାରି ପଡ଼ି କହିଲା, ମୁଁ ଗଲି । ସେ ଟିକେ ଡେରିରେ ଫେରିଲା । ତାକୁ ଅନ୍ୟ ଗୋଡ଼ମାନେ ପଚାରିବାରୁ ସେ କହିଲା, ରାଜାଙ୍କ ବଗିଚା ଆଡ଼କୁ ବୁଲି ଯାଇଥିଲି । ସେଠି ଦୁଇ ଜଣ ଓଲି ବସି କଥାବାର୍ତ୍ତା ହେଉଛନ୍ତି । ବଗିଚା ମଝିରେ ଯେଉଁ ବଡ଼ ବର ଗଛ ଅଛି, ତା' ତଳେ କୁଆଡ଼େ ଅନେକ ଧନରତ୍ନ ପୋତା ହୋଇଛି ।

ଏଣିକି ଶୁଣି ସାରିଲା ପରେ ଚତୁର୍ଥ ଗୋଡ଼ କହିଲା, ଏଥର ମୋ' ପାଳି । ମୁଁ ଥରେ ମାରି ଦେଇ ଆସେ । ଅନ୍ୟମାନେ କହିଲେ, ତୁ ଶୀଘ୍ର ଆସିବୁ । ତୃତୀୟ ଗୋଡ଼ ପରି ଡେରି କରିବୁ ନାହିଁ । ଚତୁର୍ଥ ଗୋଡ଼ ଅଳ୍ପ ସମୟ ଭିତରେ ଫେରି ଆସି କହିଲା—ବୁଝିଲ ଭାଇ, ରାଜାଙ୍କ ଯୋତା ଭିତରେ ଗୋଟିଏ ବିଷାକ୍ତ କଙ୍କଡ଼ାବିଛା ପଶିଛି । ରାଜା କାଲି ଉଠି ଯଦି ଗୋଡ଼ ପୂରାଇ ଦିଅନ୍ତି, ତେବେ ସେ ବିଛା ନିଶ୍ଚୟ ତାଙ୍କୁ କାମୁଡ଼ି ଦେବ ।

ରାଜା ଏତକ ଶୁଣି ଆଉ କି ଅପେକ୍ଷା କରନ୍ତେ ? ସେ ଚଟାପଟ୍ ଯୋଡା ପାଖକୁ ଯାଇ ଯୋଡା ଝାଡ଼ି ଦେଖିଲେ ସତକୁ ସତ ଗୋଟାଏ ବଷାକ୍ତ କଙ୍କଡ଼ାବିଛା ତା, ଭିତରୁ ଲାଙ୍ଗୁଡ଼ ଟେକି ବାହାରି ପଡ଼ିଲା । ରାଜାଙ୍କର ବର୍ତ୍ତମାନ ଦୃଢ଼ ବିଶ୍ୱାସ ହେଲା ଯେ ଚୋରଟି ଗୋଡ଼ ଯାହା କହୁଛନ୍ତି ସବୁ ସତ । ସେ ସଙ୍ଗେ ସଙ୍ଗେ ସୈନ୍ୟଦଳକୁ ଡକାଇ ତାଙ୍କର ଭଣ୍ଡାର ଘର ଘେରାଉ କଲେ । ସତକୁ ସତ ଚୋରମାନେ ଧରା ପଡ଼ିଲେ

ରାଜା ନିଜେ ଦଳେ ସୈନ୍ୟ ନେଇ ନର୍ତ୍ତକୀ ଘରକୁ ଯାଇ ସେନାପତି ଓ ଅନ୍ୟ ଦେଶର ଗୁପ୍ତଚରକୁ ବାନ୍ଧି ଆଣିଲେ ।

ତା' ପରଦିନ ବଗିଚାରେ ଥିବା ବରଗଛ ମୂଳଖୋଳା-ଗଲା । ସେଠି ଅନେକ ସୁନା ମୋହର ଓ ମଣି ମାଣିକ୍ୟ ତଳେ ପୋତା ହୋଇଥିଲା । ରାଜା ସେ ସବୁ ଧନରତ୍ନ ରାଜ-କୋଷକୁ ବୁହାଇ ନେଲେ ।

ତା'ପରେ ରାଜାଙ୍କର ବଢ଼େଇ କଥା ମନେ ପଡ଼ିଲା । ସେ ଢେଙ୍କୁରା ଦେଲେ 'ଯିଏ ବଢ଼େଇର ସନ୍ଧାନ ଦେବ ତାକୁ ହଜାରେ ସୁନା ମୋହର ଦିଆଯିବ ।' କିନ୍ତୁ ବଢ଼େଇର ଖବର କେହି ଦେଇ ପାରିଲେ ନାହିଁ । ତେଣୁ ସେ ସୁନା ମୋହର ରାଜାଙ୍କ ଭଣ୍ଡାରରେ ସେମିତି ଜମା ହୋଇ ରହିଲା ।






କଣ୍ଢେଇ ପେଡ଼ିଟି ଆପେ ଆପେ ଖୋଲିଗଲା । ଚାହୁଁ ଚାହୁଁ କଣ୍ଢେଇମାନେ ତା' ଭିତରେ ଫକ୍‌ଫାକ୍ ଡେଇଁ ପଡ଼ିଲେ । ମୋନାଲିସା କଣ୍ଢେଇଟି ସାମ୍‌ନାରେ ଛିଡ଼ା ହୋଇ ସବୁ କଣ୍ଢେଇଙ୍କୁ ଡାକିଲା—

'ଆସରେ ଆସରେ ବବ ମୀନା
ଆସ ହାତୀ ଘୋଡ଼ା ଲୁନା ମୁନା
ଚଉକି ଟେବୁଲ ହାଣ୍ଡି କୁଣ୍ଡି ଯେତେ
ଚାଲିଯିବା ଆମେ ବୈଠକଖାନା ।'

ବୈଠକଖାନାରେ ସଭା ହେଲା,
ମୋନାଲିସା ସଭାପତି ହୋଇ ସେଠି
କେତେ କଥା ସେତ ବଖାଣିଲା ।

ଶୁଣରେ କଣେଇ ଭାଇମାନେ
ଲଫି ପାଇଁ ଆମେ ଏତେ ହଟହଟା
କାହା ଲୁଗା ଚିରା, କାହା ଆଖି ଫୁଟା
କେତେ ପଡ଼ିଛନ୍ତି ଏଣେ ତେଣେ ।

ଅଗଣାର ମନ୍ଦାର ଗଛ କଣରୁ ନାଲିଆ ବଲ୍‌ଟି କହିଲା—ଦେଖନ୍ତୁ, ମୁଁ ପରା ଏଠି ପଡ଼ିଛି । ଦିନେ ଲଫି ବାପା ମୋତେ କଲିକତାରୁ ଆଣି ଲଫିକୁ ଦେଲେ । ଲଫି ମୋତେ ହାତରେ ଧରି ଗେଲି କରି କହିଲା—କି ସୁନ୍ଦର ବଲ୍ ! ମୁଁ ଗୋପବନ୍ଧୁ ପାର୍କକୁ ଯାଇ ଖେଳିବି । ହେଲେ ମୋତେ ଦିନେ ବି ପାର୍କକୁ ନେଲାନି । ମୁଁ କେତେ ଦିନ ହେଲା ଏହି ମନ୍ଦାର ଗଛ ସନ୍ଧିରେ ଅଳିଆ ଗଦା ଭିତରେ ପଡ଼ିଛି । ମୋତେ ଆଉ ତା'ର ଲୋଡ଼ା ନାହିଁ । ଆମେ ଖେଳନା ହେଲୁ ବୋଲି ଆମର କ'ଣ ମାନ-ଇଜ୍ଜତ କିଛି ନାହିଁ ।

ଖେଳନା ଚଉକିଟି କହିଲା—ଦେଖନ୍ତ, ମୋର ଯୋଡ଼ାଏ ଗୋଡ ଭାଙ୍ଗି ଯାଇଛି । ତାକୁ ସଜାଡ଼ିବା ତ ଦୂରର କଥା, ସେ ଭଙ୍ଗା ଗୋଡ଼ ଦୁଇଟି କେଉଁଠି ଅଳିଆ ଗଦା ଭିତରେ ଫିଙ୍ଗା ସରିଲାଣି ।

ମୋନାଲିସା ତା'ର ବାଁ ଆଖିକୁ ଦେଖାଇ କହିଲା— ଦେଖ, ମୋ' ଆଖିର କି ଅବସ୍ଥା ! ମୋତେ ଲଫିର ଜଣେ ସାଙ୍ଗ ତାକୁ ଜନ୍ମ ଦିନରେ ଉପହାର ଦେଇଥିଲା । ସେ ଦିନ ତା'ର କି ସରାଗ ! ମୋତେ କୁଣ୍ଢାଇ ଧରି କହିଥିଲା—ଆହା, କି ସୁନ୍ଦର ଆଖି ! ଶୁଆଇ ଦେଲେ ଆଖି ବୁଜି ହୋଇ ଯାଉଛି । ଠିଆ ହେଲେ ଆଖି ଦୁଇଟି ବଲବଲ କରି ଚାହୁଁଛି । ଏ କଣେଇ ମୁଁ କାହାକୁ ଦେବି ନାହିଁ । କିନ୍ତୁ ଏବେ ମୋ' ଆଖିକୁ ଦେଖ । ଦିନେ ତରତର ହୋଇ ସ୍କୁଲ ଯିବା ବେଳେ

ସେ ମୋତେ ଖଟ ତଳେ ଥୋଇ ଚାଲିଗଲା । ଶର୍ଙ୍ଗି ବଳେଇ ଛୁଆଟା କୁଆଡ଼େ ଆସି ମୋ' ବାଁ ଆଖିଟାକୁ ଆଂପୁଡ଼ି ଆଂପୁଡି କଣା କରି ଦେଇଛି । ମୋ' ନୂଆ ଫ୍ରକଟାକୁ ଚିରି ଟିକିଟିକି କରି ଦେଇଛି । ତେଣୁ ମୁଁ କହୁଛି, ଆଉ ଆମେ ଏଠି ରହିବା ନାହିଁ । ଚାଲ ପଢ଼ଶାଘର କୁନା ମୁନ ଘରକୁ ପଳାଇବା । ସବୁ କଣ୍ଢେଇ ଏ କଥା ଶୁଣି ରାଜି ହୋଇଗଲେ

'ଇନ୍‌କିଲାବ ଜିନ୍ଦାବାଦ' କହି ଆଗରେ ଚାଲିଛି ମୋନାଲିସା । ପଛରେ ସବୁ କଣ୍ଢେଇ ଧାଡ଼ି ବାନ୍ଧି ଶିଢ଼ିରେ ଡେଇଁ ଡେଇଁ ଚାଲିଛନ୍ତି । ଲିପି ହଠାତ୍ ଘରୁ ବାହାରି ଦେଖିଲା, କଣ୍ଢେଇମାନେ ଘରୁ ବାହାରି ଯାଉଛନ୍ତି । ଲିପି ପାଟି କରି କହିଲା—ଆରେ ଆରେ ! ତୁମେମାନେ ସବୁ ମତେ ନ ପଚାରି କୁଆଡ଼େ ଯାଉଛ ? କେହି ଯେମିତି ତା' କଥା ଶୁଣି ପାରୁନାହାନ୍ତି, କି ଗୋଟେ ହେଲେ କଣ୍ଢେଇ ପଛକୁ ମୁହଁ ଫେରାଇ ଚାହୁଁ ନାହାନ୍ତି । ସମସ୍ତେ ଆଗକୁ ମାଡ଼ି ଚାଲିଥାନ୍ତି । ଲିପି ଆଗକୁ ଧାଇଁ ଯାଇ ମୋନାଲିସା ସାମନାରେ ଛିଡ଼ା ହୋଇଗଲା । ତା'ପରେ କହିଲା - ମୁଁ ପରା ତୁମମାନଙ୍କୁ ଡ଼ାକୁଛି । ମୋ' କଥା ନ ଶୁଣି ତୁମେ ସବୁ କୁଆଡ଼େ ଚାଲିଁ ଯାଉଛ ? ବଡ ଅବାଧ୍ୟ ହୋଇ ଗଲଣି । ମୋନାଲିସା ମୁହଁ ବୁଲାଇ ପୁଣି କହିଲା—ବାଟ ଛାଡ଼ ! ଆମେ ଆଉ ତୁମ କଥା ଶୁଣିବୁ ନାହିଁ । ତୁମେ ନିଜେ ତ ଘରେ କାହାରି କଥା ମାନୁ – ନାହଁ । ମନ ଦେଇ ପାଠ ପଢ଼ୁନାହଁ । ଆମେ ଖେଲନା ବୋଲି ଆମକୁ ଶାସନ କରିବା ଜାଣିଛ ।

ତୁମେ ଅର୍ଦ୍ଧବାର୍ଷିକ ପରୀକ୍ଷାରେ ଖରାପ ନମ୍ବର ରଖିଛ ବୋଲି ତୁମ ମାଆ ଆଜି ଆମକୁ ଏଣେ ତେଣେ ଫିଙ୍ଗି ଦେଲେ । ତେଣୁ ଆମେ ଆଉ ତୁମ ପାଖରେ ରହିବୁ ନାହିଁ ।

ଲିପି ପଚାରିଲା—ତୁମେମାନେ ତାହା ହେଲେ କୁଆଡ଼େ ଯାଉଛ ? ମୋନାଲିସା କହିଲା - କାହିଁକି, ଆଉ ଏହି ସାହିରେ କ'ଣ ଭଲ ଝିଅ ନାହାନ୍ତି ? ଆମେ ତାଙ୍କ ଘରକୁ ଚାଲିଯିବୁ । ସେଠି ଆମେ ମଜାରେ ରହିବୁ । ଯେଉଁଠି ସ୍ନେହ ନାହିଁ, ସେଠି ରହି ଲାଭ କ'ଣ ?

ଲିପି କହିଲା—ମୋନାଲିସା, ଭଉଣି ମୋ ରାଣ, ତୁ ସମସ୍ତଙ୍କୁ ଯିବାକୁ ମନାକର । ମୁଁ ଆଉ ତୁମକୁ ଅନାଦର କରିବି ନାହିଁ । ଏଣିକି ମୁଁ ସମସ୍ତଙ୍କର ଯତ୍ନ ନେବି । ମୋନାଲିସା ତା'ର କଣା ଆଖିକୁ ଦେଖାଇ କହିଲା—ତୁମେ ପରା ମୋ' ଆଖିକୁ ଭଲ କରିଦେବ ବୋଲି କହିଥିଲ ? ତୁମେ ଭଲ ପିଲା ହୋଇ ନ ଥିବାରୁ ତୁମକୁ ଘରେ କେହି ଭଲ ପାଉନାହାନ୍ତି । ଯେଉଁ ଘରେ ତୁମକୁ ଭଲ ପାଉନାହାନ୍ତି, ଆଉ ଆମକୁ ବା ପଚାରିବ କିଏ ? ତୁମ କଣ୍ଢେଇ ହୋଇଥିବାରୁ ଆମକୁ ଲାଜ ମାଡ଼ୁଛି ।

ମୋନାଲିସା ବାଟ ଛାଡ଼ିଦିଅ କହି ଲିପିର ହାତ ତଳେ ଗଳି ଚାଲିଗଲା । ତା' ପଛେ ପଛେ ଚାଲିଲେ କଣ୍ଢେଇମାନଙ୍କ ପଲ୍ଟଣ ଆଉ ।

ଲିପି ପାଟି କରି କହିଲା—ତୁମେ ସବୁ ଫେରିଆସ । ମୁଁ ଆଜିଠାରୁ ଭଲ ପିଲା ହେବି । ଭଲ ପାଠ ପଢ଼ିବି । ତୁମମାନଙ୍କର ଠିକ୍ ଯତ୍ନ ନେବି ।

କିନ୍ତୁ କେହି ଶୁଣିଲେ ନାହିଁ । ସତରେ ସେମାନେ କ'ଣ ଆଉ ଫେରିବେ ନାହିଁ ? ଲିପି ବଡ଼ ପାଟିରେ ମୋ-ନା-ଲି-ସା-ରଡ଼ି ଛାଡ଼ିଲା । ତା'ର ବଡ଼ ଅପା ଧାଇଁ ଆସି ତାକୁ ହଲାଇ ଦେଇ କହିଲା, 'ପଢ଼ା ଟେବୁଲ୍‌ରେ ବସି ଏତେ ପାଟି କରୁଛୁ କାହିଁକି ?'

ଲିପି ନଡ ମଲମଲ ଆଖିରେ ବନ୍ଧି ଉପରୁ ମୁଣ୍ଡ ଟେକି ଚାହିଁଲା ବେଲକୁ ତାକୁ ଘେରି ସମସ୍ତେ ହସୁଛନ୍ତି । ଲିପି ତରତରରେ ଉଠି ବହି ଥାକ ପାଖକୁ ଯାଇ କଣ୍ଢେଇ ପେଡ଼ିଟି ଖୋଲି ଦେଖିଲା, ସବୁ କଣ୍ଢେଇ ଅଛନ୍ତି । କିନ୍ତୁ ନାଲି ବଲ୍‌ଟି ନାହିଁ । ତା'ପରେ ମନେ ପଡ଼ିଲା ରାତି ପାହିଲେ ପରୀକ୍ଷା । ପରୀକ୍ଷା ସରିଲେ ସେ ସବୁ କଣ୍ଢେଇମାନଙ୍କୁ ସଜାଡ଼ି ଦେବ । ନ ହେଲେ ସତରେ ଯଦି ସେମାନେ ରୁଷି ଚାଲି-ଯା'ନ୍ତି, ତା'ହେଲେ ଏତେ ଆପଣାର ଖେଳନା କଣ୍ଢେଇ ଛାଡ଼ି ସେ ରହିବ କେମିତି ?






ଘର କଣରେ, ଅନ୍ଧାରୁଆ ଜାଗାରେ, ବୁଢ଼ିଆଣୀ କାହିଁକି ଜାଲ ବୁଣେ ତୁମେ ସବୁ ଜାଣିଛ ତ ? ସେଥିରେ ମାଛି, ମଶା ସବୁ ପଡ଼ିଲେ ଆଉ ଉଡ଼ି ପାରନ୍ତି ନାହିଁ । ବୁଢ଼ି-ଆଣୀ ସେମାନଙ୍କୁ ମାରି ଖାଏ । ଏଇ ଶିକାର ଧରିବା ପାଇଁ ହିଁ ତା'ର ଜାଲ ବୁଣା କାମ । ରୁଷିଆ ଦେଶରେ ବୁଢ଼ିଆଣୀ ଜାଲ ବୁଣିବା ବିଷୟରେ ଗୋଟିଏ ସୁନ୍ଦର କାହାଣୀ ଅଛି । ସେକଥା କହୁଛି ଶୁଣ ।

ସାରା ପୃଥିବୀରେ ସେତେବେଳେ କେବଳ ଜଣେ ରାଜା ରାଜୁତି କରୁଥିଲେ । ସେ ଏତେବଡ଼ ବୀର ଥିଲେ ଯେ, ମଣିଷମାନଙ୍କ ସହିତ ପଶୁପକ୍ଷୀ ସମସ୍ତେ ତାଙ୍କ ଅଧୀନରେ ଥିଲେ । ସମସ୍ତେ ତାଙ୍କୁ ମାନୁଥିଲେ । ସେତେବେଳେ କିନ୍ତୁ ଗୋଟାଏ ଜିନିଷର ଅଭାବ ଥିଲା—ସେଇଟା ହେଲା ନିଆଁ । ପୃଥିବୀରେ କେଉଁଠି ହେଲେ ନିଆଁ ନଥିଲା । ସୂର୍ଯ୍ୟ ଅସ୍ତ ହେଲେ ସାଙ୍ଗେ ସାଙ୍ଗେ ଚାରିଆଡେ ଅନ୍ଧାର ଘୋଟି ଯାଉଥିଲା । ମୁହଁକୁ ମୁହଁ ଦିଶୁ ନ ଥିଲା । ଲୋକମାନେ ହଇରାଣ ହେଉ-ଥିଲେ । ଶୀତ ହେଲେ ନିଆଁ ଜାଳି ଉଷୁମ ହେବାର ଉପାୟ

ନଥିଲା । ଅନ୍ଧାରେ ଲୋକମାନଙ୍କର ହାତଗୋଡ଼ କୋଳ ମାରି ଯାଉଥିଲା ।

ସମସ୍ତେ ଜାଣନ୍ତି ପାତାଳରେ ନିଆଁ ଅଛି । ପୃଥିବୀ ଭିତରେ ହୁତ୍ ହୁତ୍ ନିଆଁ ଜଳୁଛି । କିନ୍ତୁ ଆଣିବାକୁ ବାଟ କାହିଁ ! ରାଜା କେତେ ଢେଙ୍କୁରା ଦେଲେ । କିନ୍ତୁ କେହି ହେଲେ ନିଆଁ ଟିକେ ଆଣି ପାରିଲେ ନାହିଁ ।

ରାଜା ଦିନେ ସଭା ଡ଼କାଇ ମନ୍ତ୍ରୀମାନଙ୍କ ସହିତ ମନ୍ତ୍ରଣା କଲେ । ସମସ୍ତେ ଏକମତ ହୋଇ ଠିକ୍ କଲେ ଯିଏ ପାତାଳରୁ ନିଆଁ ଆଣିଦେବ, ସିଏ ତା'ର ଜାତି ଭାଇମାନଙ୍କ ସହିତ ଯେ କୌଣସି ଟେବୁଲରେ ବସି ମାଗଣାରେ ଖିଆପିଆ କରି ପାରିବ । ସେଥିରେ ତାକୁ ମନା କରି ପାରିବେ ନାହିଁ କି ଘଉଡ଼େଇ ଦେଇ ପାରିବେ ନାହିଁ । ଏପରିକି ତା' ପିଲାଛୁଆ ନାତିନାତୁଣୀ ସବୁ ଦିନ ପାଇଁ ଖାଇ ପାରିବେ । କଥାଟା ଚାରିଆଡ଼େ ରାଷ୍ଟ୍ର ହୋଇଗଲା । ଜଙ୍ଗଲରେ ଥିବା ପଶୁମାନେ ବି ଏ କଥା ଶୁଣିଲେ । ଆକାଶରେ ଉଡ଼ୁଥିବା ପକ୍ଷୀମାନେ ଜାଣିଲେ । ସାପ, ବିଛା, ପୋକଜୋକ କେହି ବାଦ୍ ଗଲେ ନାହିଁ । ଏତେ ବଡ଼ ସୁବିଧାଟା ଛାଡେ କିଏ ! ସମସ୍ତେ ପାତାଳକୁ ଗଲେ । କିନ୍ତୁ କେହି ଆଉ ସେଠାରୁ ଫେରିବାର ଶୁଣାଗଲା ନାହିଁ ।

ଦିନେ ଗୋଟିଏ ବୁଢ଼ିଆଣି ଏ କଥା ଶୁଣିଲା । ସେ ଗୁଡ଼ାଏ ଦଉଡ଼ି ବୁଣିଲା ପାତାଳ ଯିବା ସୁଡଙ୍ଗ ମୁହଁରେ ଗୋଟିଏ ଗଛରେ ଦଉଡ଼ିଟି ବାନ୍ଧି ତାକୁ ଧରି ତଳକୁ ଝୁଲି ପଡ଼ିଲା । ସେଠି ଗୋଟିଏ ଅନ୍ଧାରୁଆ ଯାଗା ଦେଖି ସେ ଛପି ରହିଲା । କେହି ନଥିଲା ବେଳେ ବେଳ ଉଣ୍ଡି ଖଣ୍ଡିଏ ଜଳନ୍ତା ନିଆଁ ଧରି ଦଉଡ଼ିରେ ଚଢ଼ିବାକୁ ଲାଗିଲା । ପୃଥିବୀରେ

ପହଞ୍ଚିବା ପରେ ତାକୁ ଘୁରି ହାଲିଆ ଲାଗିଲା । ସେ ·ଗଛ କୋରଡ଼ରେ ନାଆଁ ରଖି ସେଇଠି ଶୋଇ ପଡ଼ିଲା ।

ସକାଳ ହେଲା । ପକ୍ଷୀମାନେ ଆହାର ଖୋଜି ଗଲେ । ଗାଈ ଗୋରୁମାନେ ପଡ଼ିଆରେ ଚରିଲେ । କିନ୍ତୁ ବୁଢ଼ିଆଣୀର ନିଦ ଭାଙ୍ଗି ନ ଥାଏ । ମାଛିଟିଏ ଗୁଣୁଗୁଣୁ ହୋଇ ଉଡୁଥିଲା । ଗୋଟିଏ ଅଦ୍ଭୁତ ବାସନା ତା' ନାକରେ ବାଜିଲା । ସେ ଚାରିଆଡ଼କୁ ଚାହିଁଲା । ଦେଖିଲା, ବୁଢ଼ିଆଣୀ ମୁଣ୍ଡ ପାଖରେ ଖଣ୍ଡେ ଜଳନ୍ତା ନାଆଁ । ସେ ଆଉ ଡେରି ନ କରି ଚଟ୍‌କରି ଜଳନ୍ତା ନାଆଁ ଟିକକ ଧରି ଏକା ଥରକେ ଉଡ଼ିଯାଇ ରାଜାଙ୍କ ପାଖରେ ହାଜର । ରାଜାଙ୍କୁ ଜୁହାର ହୋଇ କହିଲା—ମଣିମା ବହୁତ କଷ୍ଟରେ ପାତାଳରୁ ନାଆଁ ଆଣିଛି ! ମୋତେ ପୁରସ୍କାର ଦିଅନ୍ତୁ । ରାଜା ନାଆଁ ପାଇ ମହା ଖୁସି । ସେ ମାଛି ପାଇଁ ଗୋଟିଏ ବଡ଼ ଭୋଜିର ଆୟୋଜନ କଲେ । ସେହି ସଭାରେ ଗୋଟିଏ ହୁକୁମନାମା ଜାରି ହେଲା । ଆଜିଠାରୁ ମାଛି ଯେତେବେଳେ ଇଚ୍ଛା କରିବ, ତା' ଭାଇ ବନ୍ଧୁ କୁଟୁମ୍ବ ସମସ୍ତଙ୍କୁ ଧରି ଯେ କୌଣସି ଟେବୁଲରେ ବସି ମାଗଣାରେ ଖାଇବ । କେହି ତାକୁ ମନା କରି ପାରିବ ନାହିଁ । ଯିଏ ମନା କରିବ, ତା' ମୁଣ୍ଡ କାଟ ହେବ ।

ବେଳ ଘଡ଼ିଏ ସରିକି ବୁଢ଼ିଆଣୀର ନିଦ ଭାଙ୍ଗିଲା । ସେ ତରତର ହୋଇ ଉଠି ଦେଖିଲା ବେଳକୁ ତା' ନାଆଁ କିଏ ନେଇ ଯାଇଛି । ସେ ଏଣେ ତେଣେ ଧାଇଁ ଖୋଜିଲା । ବାଟରେ ଯାହାକୁ ଦେଖିଲା ତାକୁ ପଚାରିଲା—ମୋ ନାଆଁ କିଏ ନେଇଛ ?

କିନ୍ତୁ ସମସ୍ତେ ହସି ହସି କହିଲେ—କିଏ କାହାଁକି କୁଆଡ଼େ ନେବ ! ମାଛି ପରା ନାଆଁ ନେଇ ରାଜାଙ୍କୁ ଦେଲାଣି । ଏ କଥା ଶୁଣି ବୁଢ଼ିଆଣୀ ଆଉ କି ଥୟ ଧରେ ! ସେ ପାଟି

କଲ—ମାଛ ଚୋରଣୀ ! ସେ ମୋ’ ନଅାଁ ଚୋର କର ନେଇଛ । ମୁଁ ପାତାଳକୁ ଯାଇ ନଅାଁ ଆଣିଲ, ଆଉ ସିଏ ପୁରସ୍କାର ପାଇବ ।

ତା କଥା ଶୁଣି ଅନ୍ୟମାନେ କହଲେ—ବୁଢ଼ିଆଣୀ ଭାଇ ! ତୁ ଛୋଟାରେ କାହିଁକି ପାଟି କରୁଛ ! ମାଛ ତ ତେଣେ ହୁକୁମନାମା ପାଇ ସାରଲାଣି । ଏ କଥା ଶୁଣି ବୁଢ଼ିଆଣୀ ଆହୁର ରାଗିଗଲା । ସେ କେବେହେଲେ ମାଛକୁ ଛାଡ଼ ଦେବ ନାହିଁ । ଯେଉଁ ପୁରସ୍କାର ସେ ପାଇବା କଥା, ମାଛ କପର ନେବ ? ଏ କଥା ଭାବ ସେ ରାଜାଙ୍କ ପାଖକୁ ଧାଇଁଲା । ସେଠାକୁ ଯାଇ ମାଛ ନାଁରେ ରାଜାଙ୍କ ପାଖରେ ଫେରାଦ ଦେଲା । ମାଛ କେଉ ଛାଡ଼ବା ଜୀବ । ସେ କହଲା—ହଜୁର ! ବୁଢ଼ିଆଣୀ ମିଛ କଥା କହୁଛ । ସେ ନଅାଁ ଆଣିବାର କିଏ ଦେଖିଛ କହୁ । ରାଜା ମାଛ ପଟ ନେଇ ବୁଢ଼ିଆଣୀକୁ କହଲେ—ତୁମେ ଯାହା କହୁଛ ତା’ର ପ୍ରମାଣ ଦିଅ । ନ ହେଲେ ଏଠୁ ଶୀଘ୍ର ବାହାର ଯାଅ ।

ବୁଢ଼ିଆଣୀ କହଲା—ପାତାଳକୁ ଯିବା ବାଟରେ ଗଛରେ ଦଉଡ଼ିଟିଏ ଝୁଲୁଛି । ତାକୁ ଧର ମୁଁ ପାତାଳକୁ ଯାଇଥିଲ । ରାଜା କହଲେ—ତୁମେ ପାତାଳରୁ ନଅାଁ ଆଣିଚ ? କିଏ ଦେଖିଛ ? ସାକ୍ଷୀ ଆଣ, ତା’ ଉପରେ ବିଚାର ହେବ । ବୁଢ଼ିଆଣୀ କ’ଣ କହବ । ତା’ର ଅଳସୁଆମି ଯୋଗୁଁ ଏତକ ଅସୁବିଧା ହେଲା । ସେ କାନମୁଣ୍ଡ ଆଉଁସି ମାଛକୁ ଗାଳି ଦେଇ ଦେଇ ଚାଲିଗଲା । ରାଜାଙ୍କ ସଭାରୁ ଚାଲିଗଲା ସିନା, ବୁଢ଼ିଆଣୀର ମାଛ ଉପରୁ ରାଗ କମାରୁ କମି ନ ଥାଏ । ତା’ର ଜାତଭାଇଙ୍କୁ ଏକାଠି କର କହଲା—ଭାଇମାନେ, ମୁଁ ଅଣିଥିବା ନଅାଁକୁ ମାଛ ଚୋରାଇ ନେଇ ରାଜାଙ୍କ ପାଖରୁ ପୁରସ୍କାର ପାଇଲା । ମାଛ ପାଇଁ ଆମେ ସମସ୍ତେ ପୁରସ୍କାରରୁ ବଞ୍ଚିତ ହେଲୁ । ମାଛ ବଂଶକୁ ନିପାତ କରବା ପାଇଁ ସେ ଦିନ

ସେମାନେ ଗୋଟିଏ ଉପାୟ ପାଞ୍ଚିଲେ । ସବୁ ବୁଢ଼ିଆଣୀ ଅନ୍ଧାରୁଆ କଣରେ ଜାଲ ବୁଣି ମାଛିକୁ ଧରିବେ ଓ ତାକୁ ମାରି ସେମାନଙ୍କ ବଂଶ ଶେଷ କରିବେ ବୋଲି ପଣ କଲେ ।

ସେଇ ଦିନଠାରୁ ଆଜିଯାଏଁ ବୁଢ଼ିଆଣୀ ତା'ର ଜାଲ ବୁଣି ମାଛି ଶିକାର କରୁଛି । ଆଉ ମାଛିମାନେ ମନଇଚ୍ଛା ସମସ୍ତଙ୍କ ଟେବୁଲ୍‌ରେ ବସି ମାଗଣାରେ ଖାଉଛନ୍ତି । ତାକୁ ବା ମନା କରିବ କିଏ ? ରାଜା ପରି ହୁକୁମନାମା ଜାରି କରିଛନ୍ତି ।

(ଋଷ ଦେଶର ଲୋକ କଥା ଛାୟାରେ ଲିଖିତ)





# ଖଣ୍ଡିଆ ଭୂତ

ବୈଶାଖ ମାସ । ଖରା ଲେଉଟାଣି ବେଳ । ମୀନା ଓ କୁନା ବସି ଦାଣ୍ଡ ପିଣ୍ଡାରେ ଖେଳୁଥିଲେ । ବାଲି ଓ ପତର ସଜାଇ ଦୋକାନ କରୁଥିଲେ । ହଠାତ୍ ଦଲ୍କାଏ ପବନ ସାଙ୍ଗକୁ କଳାହାଣ୍ଡିଆ ମେଘ ମାଡ଼ି ଆସିଲା । ପତର ସବୁ ଉଡ଼ିଗଲା । ପିଲାଏ ପତର ଆଣିବାକୁ ଧାଇଁଲେ । ଗୋଟାଏ ପତର ଧରିବା ବେଳକୁ ଆଉ ସବୁ ଉଡ଼ିଗଲା । ଠିକ୍ ସେତିକି-ବେଳେ ଜେଜେମା’ ଆସି ତାଙ୍କୁ ଭିଡ଼ି ଘର ଭିତରକୁ ନେଇଗଲେ । ମୀନା ଓ କୁନା ଜେଜେମା’ ଉପରେ ରାଗି ପାଟି କରୁଥାନ୍ତି, ଆମେ ଖେଳିବୁ, ଆମକୁ ଛାଡ଼ି ଦିଅ ।

ଜେଜେମା’ କହିଲେ—ନାଇଁରେ ପିଲେ, ଏଇଲେ ଖେଳନ୍ତି ନାହିଁ, ଖଣ୍ଡିଆଭୂତ ଆସି ତୁମକୁ ଉଡ଼ାଇ ନେଇ-ଯିବ ଯେ !

ଆମେ ଖଣ୍ଡିଆ ଭୂତକୁ ଦେଖିବୁ କହି ଦୁହେଁ ଜେଜେ-ମା’ଙ୍କ ହାତରୁ ଖସି ପିଣ୍ଡାକୁ ଚାଲିଗଲେ । ସେତେବେଳେ

ପୁଣି ଦଲକାଏ ପବନ ଆସି ତାଙ୍କ ଆଖି ଉପରେ ମେଞ୍ଚାଏ ଧୂଳି ବାଞ୍ଚି ଦେଇଗଲା । ଦୁହେଁ ଆଖି ମଳି ମଳି ନୟାନ୍ତ । ଚାହୁଁ ଚାହୁଁ ଆକାଶରେ କଳାହାଣ୍ଡିଆ ମେଘ ଚାରିଆଡ଼ ଘୋଟିଗଲା । ଲୁନା କହିଲା—କେଜୀ, କାହୁଁ ଖଣ୍ଡିଆ ଭୂତ ! ଏ ତ ତୋଫାନ । ତୁ ଖାଲି ଆମକୁ ମିଛରେ ଡ଼ରାଉଛୁ ।

କେଜେମା' କହିଲେ—ତୁମେ ଯାହାକୁ ଝଡ଼-ତୋଫାନ କହୁଛ, ସେତ ସେଇଆକରେ । ଦେଖିଲ ନାହିଁ, ଖରା ପଡୁଥିଲା, ହଠାତ୍ ଅନ୍ଧାର ଘୋଟି ଆସିଲା । ତାକୁ ପରା ଖଣ୍ଡିଆ ଭୂତ କହନ୍ତି । ମୀନା ତ ଭାରି ଡ଼ରକୁଳୀ । କେଜୀଙ୍କୁ ଲାଗିଯାଇ କହିଲା—କେଜୀ, ଖଣ୍ଡିଆ ଭୂତ କାହାଣୀ କୁହ ।

କେଜୀ କହିଲେ—ତୁମେ ତୁନି ହୋଇ ମୋ' ପାଖରେ ବସ । ମୁଁ କହୁଛି । ଜଙ୍ଗଲରେ ଜଣେ ପଣ୍ଡିତ ଥିଲେ । ତାଙ୍କର ସ୍ତ୍ରୀ ଭାରି ସୁନ୍ଦରୀ । ତାଙ୍କୁ ଯିଏ ଦେଖେ, ସେ ଘଡ଼ିଏ ତାଙ୍କ ଆଡ଼କୁ ଚାହିଁ ରହେ ।

ଦିନେ ଗୋଟିଏ ଭୂତରାଜା ତାଙ୍କୁ ଦେଖିଲା । ପଣ୍ଡିତଙ୍କ ସ୍ତ୍ରୀଙ୍କୁ ବାହା ହେବ ବୋଲି ଭାବିଲା । କିନ୍ତୁ ପଣ୍ଡିତ ଗୁଣି ବିଦ୍ୟା ଜାଣନ୍ତି । ସେ ଚାହିଁଲେ ଭୂତରାଜାକୁ ବାନ୍ଧି ରଖି ପାରିବେ । ବହୁତ ଭାବି ଭୂତରାଜା ଗୋଟିଏ ଉପାୟ ବାହାର କଲା । ସେ ତାର ଦୁଇ ଜଣ ଭୂତକୁ ସାନ ପିଲା କରି ପଣ୍ଡିତଙ୍କ ପାଖକୁ ପଠାଇଦେଲା । ଯେ କୌଣସି ପ୍ରକାରେ ଗୁଣିବିଦ୍ୟା ଶିଖି ଆସିବା ପାଇଁ ସେମାନଙ୍କୁ କାନେ କାନେ କହିଲା ।

ସେମାନେ ପଣ୍ଡିତଙ୍କ ପାଖକୁ ପଢିବାକୁ ଗଲେ । ପଣ୍ଡିତଙ୍କ ସବୁ କାମ ସେମାନେ କରନ୍ତି । ଗାଈ ଚରାନ୍ତି । ପାଣି ବୁହନ୍ତି । ବାଡ଼ି ବଗିଚାରେ କାମ କରନ୍ତି । ଘରର ସବୁ ନିଜ

କାମରେ ସାହାଯ୍ୟ କରନ୍ତି । ପଣ୍ଡିତ ଓ ତାଙ୍କ ସ୍ତ୍ରୀ ସେମାନଙ୍କୁ ନିଜ ପିଲା ପରି ଭଲ ପାଆନ୍ତି ।

ଚାହୁଁ ଚାହୁଁ ବର୍ଷେ ବିତିଗଲା । ସେମାନେ ସବୁ ପାଠ ଆୟତ୍ତ କରି ସାରିଲେଣି । ଖାଲି ରହିଲା ଗାରେଡ଼ି ମନ୍ତ୍ର ଶିଖିବା । ଏଣେ ଭୂତ ଦୁଇଜଣ ଘରକୁ ଫେରିବାକୁ ଖାଲି ଛଟପଟ ହେଉଥାନ୍ତି । ଦିନେ ସେମାନେ ପଣ୍ଡିତଙ୍କ ସ୍ତ୍ରୀଙ୍କୁ କହିଲେ—ମାଆ, ଆମକୁ ପଣ୍ଡିତେ ଗାରେଡ଼ି ମନ୍ତ୍ର ଶିଖାଇ ନାହାନ୍ତି । ତୁମେ ଟିକେ ଦୟାକରି କହି ଦିଅନ୍ତନି ?

ପଣ୍ଡିତଙ୍କ ସ୍ତ୍ରୀ କହିଲେ—ହଁରେ ପୁଅ, ଧାନ କଟା ସରିଲାଣି । ଧାନତକ ବିଲରୁ ଆଣି ଘରେ ରଖି ଦିଅ । ତା'ପରେ ଗାରେଡ଼ି ମନ୍ତ୍ର ଶିଖି ଚାଲିଯିବ ।

ଏ କଥା ଶୁଣି ଦୁଇ ଜଣ ଯାକ ବିଲକୁ ଗଲେ । ବଡ଼ ଭୂତଟା ଖାଲି ଯିବା ପାଇଁ ତରତର । ତେଣୁ ସେ ତା' ନିଜ ମନ୍ତ୍ର ବଳରେ ଆଗେ ଆଗେ ଚାଲିଲା । ଧାନତକ ମନକୁ ମନ ଅଖାରେ ପଶିଗଲା । ଦେଖୁ ଦେଖୁ ତାଙ୍କ ପଛେ ପଛେ ଅଖା ସବୁ ଧାଡ଼ି ବାନ୍ଧି ଚାଲିଲେ । ଗାଁ ଲୋକେ ଏ ସବୁ ଦେଖି ତାଟକା । ପଣ୍ଡିତଂକ ସ୍ତ୍ରୀ କୋଠା ଉପରେ ଠିଆ ହୋଇଥିଲେ । ସେ ସେମାନଙ୍କ ସହିତ ଧାନ ଅଖା ଚାଲି ଆସିବା ଦେଖି ତରତର ହୋଇ ଶିଡ଼ିରୁ ଓହ୍ଲାଇ ଆସିଲେ ଓ ପଣ୍ଡିତଙ୍କୁ କହିଲେ—ବୁଝିଲ, ଏମାନେ ଭୂତ ଏମାନଙ୍କୁ ବାନ୍ଧି ପକାଓ ।

ପଣ୍ଡିତ ମନ୍ତ୍ର ବୋଲିବାକୁ ଲାଗିଲେ । ବଡ଼ ଭୂତ ଆଗେ ଆସି ପହଞ୍ଚିଲା । ତାକୁ ଦେଖି ପଣ୍ଡିତ କହିଲେ—ଭୂତ ହୋଇ ମୋ' ଠାରୁ ମନ୍ତ୍ର ଶିଖିବୁ ? ରହ, ଦେଖେ ମଜା

ଚଖାଉଛୁ । ତୋତେ ସବୁ ଦିନ ପାଇଁ ଗୋଡ଼ହାତ ବାନ୍ଧି ପକାଇ ଦେବ ।

ଏ କଥା ଶୁଣି ବିଚରା ଭୂତର ହଲକ ଶୁଖିଗଲା । ସେ କାନ୍ଦି ପକାଇ ପଣ୍ଡିତଙ୍କ ଗୋଡ଼ ତଳେ ପଡ଼ି କହିଲା—ମୋତେ ଦିନକ ପାଇଁ ହେଲେ ବାହାରକୁ ଯିବାକୁ ଦିଅନ୍ତୁ । ମୁଁ ଅପଣଙ୍କ ପାଖରେ ବର୍ଷେ ରହି ସେବା କରିବ ।

ପଣ୍ଡିତେ ରାଗିଯାଇ କହିଲେ—ମୁଁ କିଛି ଶୁଣିବି ନାହିଁ । ପଣ୍ଡିତଙ୍କ ସ୍ତ୍ରୀ ଦୟାପରବଶ ହୋଇ କହିଲେ—ତାକୁ ଦିନକ ପାଇଁ ବାହାରକୁ ଛଡାଯାଉ କେବଳ ବୈଶାଖ ଶେଷ ବେଳକୁ ଦିନେ ଯାଇ ବୁଲି ଆସିବ । କିନ୍ତୁ ଦିନରେ ଯାଇ ସନ୍ଧ୍ୟାରେ ଯେପରି ପୁଣି ଫେରି ଆସିବ ।

ସେହି ଦିନଠାରୁ ପ୍ରତି ଜ୍ୟେଷ୍ଠ ମାସରେ ଦିନେ ସେ ପଦାକୁ ଆସେ । ଗଛଡ଼ାଳ ଭାଙ୍ଗି ଧୂଳି ଉଡାଇ ସବୁ ଛିନ୍ ଛତ୍ର କରି ପକାଏ ଓ ପୁଣି ଯାଇ କୋଠରୀରେ ବନ୍ଦୀ ହୋଇ ରହେ ।





# ଚାଷୀର ଅକଲ

ଗରୀବ ଚାଷୀଟିଏ । ସେ ଗାଁ ଜମିଦାରଙ୍କଠାରୁ କିଛି ସାହାଯ୍ୟ ମାଗି ଚାଷ କରିବ ବୋଲି ଭାବିଲା । ଜମିଦାରଙ୍କ ପାଖକୁ ଗଲେ କିଛି ଭେଟି ତ ନେବାକୁ ପଡ଼ିବ । ନିଜର ସମ୍ବଲ ଭିତରେ ଚାଷୀଟିର ହଂସଟିଏ ଥାଏ । ହଂସଟିକୁ ନେଇ ଚାଷୀଟି ଜମିଦାରଙ୍କ ଘରକୁ ଗଲା । ଜମିଦାରଙ୍କୁ ଭେଟି କହିଲା—ଆଜ୍ଞା, ମୁଁ ଆପଣଙ୍କ ପାଇଁ ହଂସଟିଏ ଆଣିଛି ।

ଜମିଦାରଙ୍କୁ ମିଶେଇ ତାଙ୍କ ଘରେ ଛ' ଜଣ ଲୋକ । ଏଣେ ଚାଷୀଟି ଗୋଟିଏ ବୋଲି ହଂସ ଆଣିଛି । ତେଣୁ ଜମିଦାର କହିଲେ—ଆରେ, ଆମେ ତ ଛ' ଜଣ । ଗୋଟେ ହଂସକୁ ଖାଇବୁ କିପରି ?

ଚାଷୀଟି କହିଲା—ହଜୁର, କିଛି ଚିନ୍ତା କରନ୍ତୁ ନାହିଁ । ଆପଣ ଗୋଟାସୁଦ୍ଧା ହଂସଟିକୁ ରାନ୍ଧି ଆଣନ୍ତୁ । ରନ୍ଧା ସରିଲେ ମୁଁ ଭାଗ ବାଣ୍ଟି ଦେବି ।

ଚାଷୀର କଥା ଅନୁସାରେ ଜମିଦାର ସାଙ୍ଗେ ସାଙ୍ଗେ ହଂସଟିକୁ ରାନ୍ଧିବା ପାଇଁ କହିଲେ । ହଂସଟି ରନ୍ଧା ସରିଲା । ଜମିଦାର, ତାଙ୍କ ସ୍ତ୍ରୀ, ଦୁଇ ପୁଅ ଓ ଦୁଇ ଝିଅ ଆସି ବସିଲେ ।

ଚାଷୀଟି ଗୋଟିଏ ଛୁରୀରେ ପ୍ରଥମେ ମୁଣ୍ଡଟି କାଟି ଜମିଦାରଙ୍କୁ ଦେଇ କହିଲା—ହଜୁର, ଆପଣ ଏ ଘରର ସର୍ବେସର୍ବା । ସେଥିପାଇଁ ମୁଣ୍ଡଟି ଆପଣଙ୍କର । ତା'ପରେ ହଂସର ଗଳାଟିକୁ କାଟି ତାଙ୍କ ସ୍ତ୍ରୀଙ୍କୁ ଦେଇ କହିଲା—ମାଲିକଙ୍କ ପରେ ଆପଣ ହିଁ ବଡ଼ । ତେଣୁ ଗଳାଟି ଆପଣ ନିଅନ୍ତୁ । ସେଇଠୁ ଗୋଡ଼ ଦୁଇଟା କାଟି ପୁଅ ଦୁ'ଜଣଙ୍କୁ ଦେଇ କହିଲା—ପୁଅ ଦୁହେଁ ଚାଲି ଚାଲି ବୁଲି ସବୁ ଦେଖାଶୁଣା କରନ୍ତୁ । ତେଣୁ ସେମାନଙ୍କର ଗୋଡ଼ଦୁଇଟା । ଶେଷରେ ହଂସଟିର ଡେଣା ଦୁଇଟା କାଟି ଦୁ' ଝିଅଙ୍କୁ ଦେଉ ଦେଉ କହିଲା—ଝିଅମାନେ ସବୁବେଳେ ପରଘରୀ । ଆଜି ଅଛନ୍ତି, କାଲି ବାହା ହେଲେ ଚାଲିଯିବେ । ତେଣୁ ଡେଣା ଦୁଇଟି ସେମାନଙ୍କର । ହେଲେ ଗଣ୍ଡିଟା ଏବେ ବଳି ପଡ଼ିଲା । ଆଉ ବଳକା ଜିନିଷ ହିଁ ମୋର ପ୍ରାପ୍ୟ ।

ଜମିଦାର ଚାଷୀଟିର ଭାଗ ବଣ୍ଟା ଦେଖି ଖୁବ୍ ଖୁସି ହେଲେ । ସେ ତା' ବୁଦ୍ଧିର ତାରିଫ୍ ନ କରି ରହି ପାରିଲେ ନାହିଁ । ତା'ପରେ ପଚାରିଲେ—ଆଚ୍ଛା, ତମେ କାହିଁକି ଆସିଛ କିଛି ତ କହିଲ ନାହିଁ ?

ଚାଷୀଟି ହାତ ଯୋଡ଼ି କହିଲା—ହଜୁର, ମୋର ଜମିବାଡ଼ି କିଛି ନାହିଁ । ମୋତେ ଖଣ୍ଡିଏ ଜମିଦେଲେ ଚାଷବାସ କରନ୍ତି ।

ଜମିଦାରତ ଆଗରୁ ତା' ଉପରେ ଖୁସି ହୋଇଥିଲେ । ଏ କଥା ଶୁଣି ତାକୁ କିଛି ଜମି, ହଳେ ବଳଦ, ବିହନ, ଲଙ୍ଗଳ

ଦେଲେ । ଚାଷୀଟି ମନ ଖୁସିରେ ଘରକୁ ଫେରି ଆସିଲା ।

ଚାଷୀର ଘର ପାଖେ ଆଉ ଜଣେ ଚାଷୀ ରହୁଥାଏ । ତା'ର ବେଶ୍ ସମ୍ପତ୍ତି । ତଥାପି ତା'ର ଅଧିକ ସମ୍ପତ୍ତି ପାଇଁ ଲୋଭ ଥାଏ । ଗରିବ ଚାଷୀଟି ଏ ସବୁ ଜିନିଷ ଆଣିବାର ଦେଖି ପଚାରିଲା—ଭାଇ, ଏ ସବୁ କ'ଣ କିଣିକରି ଆଣିଲ ? ଗରିବ ଚାଷୀଟି କହିଲା—ନା ଭାଇ, ମୋର ଏତେ ପଇସା କାହିଁ ଯେ ଏ ସବୁ ଜିନିଷ କିଣିବି ? ତୁମେ ତ ଜାଣ, ଜମିଦାର ଆମର ଭାରି ଦୟାଳୁ । ମୁଁ ତାଙ୍କୁ ଗୋଟେ ହଂସ ଭେଟି ଦେଇ ମୋ ଦୁଃଖ କହିବାରୁ ସେ ମୋତେ ଜମି ସହିତ ଏ ସବୁ ଜିନିଷ ଦେଇଛନ୍ତି ।

ଧନୀ ଚାଷୀଟି ତ ଲୋଭୀ । ଏ କଥା ଶୁଣି ସେ ଭାବିଲା—ସେ ଗୋଟେ ହଂସ ଭେଟି ଦେବାରୁ ଜମିଦାର ତାକୁ ଏତେ ସବୁ ଜିନିଷ ଦେଲେ । ମୁଁ ଯଦି ପାଞ୍ଚୋଟି ହଂସ ଦେବି, ତେବେ ମୋତେ ତ ତାର ପାଞ୍ଚଗୁଣ ଜିନିଷ ମିଳିବ । ଏୟା ଭାବି ଧନୀ ଚାଷୀଟି ପାଞ୍ଚୋଟି ହଂସ ନେଇ ଜମିଦାରଙ୍କୁ ଭେଟି ଦେଲା । ଜମିଦାର ତାକୁ କହିଲେ—ଘରେ ଆମେ ହେଲୁ ଛ'ଜଣ । ତମେ ତ ପାଞ୍ଚୋଟି ହଂସ ଆଣିଛ । ଆମେ ଖାଇବୁ କିପରି ? ତମେ ଟିକେ ବାଣ୍ଟି ଦିଅ ।

ଏ କଥା ଶୁଣି ଚାଷୀଟି ମହା ଅଡୁଆରେ ପଡିଲା । ତାକୁ କିଛି ବୁଦ୍ଧି ଦେଖାଗଲା ନାହିଁ । ପାଞ୍ଚୋଟି ହଂସ ଛଅ ଜଣଙ୍କ ମଧ୍ୟରେ ବାଣ୍ଟିବ କିପରି ? ଜମିଦାର ଜାଣିଲେ ଏ ଚାଷୀଟି ହଂସ ଗୁଡ଼ିକ ଠିକ୍ ଭାବରେ ବାଣ୍ଟି ପାରିବନି । ସେଠୁ ସେ ଗରୀବ ଚାଷୀଟିକୁ ଡ଼କାଇ ପଠାଇଲେ । ଗରିବ ଚାଷୀଟି ଆସିଲା । ସମସ୍ତ କଥା ଶୁଣି କହିଲା—ଓ ! ଏଇ କଥା ! ମୋତେ ଦିଅନ୍ତୁ, ମୁଁ ବାଣ୍ଟିଦେବି ।

ଚାଷୀଟି ଗୋଟେ ହଂସ ଜମିଦାର ଓ ତାଙ୍କ ସ୍ତ୍ରୀଙ୍କୁ ଦେଇ କହିଲା—ହଂସକୁ ମିଶାଇ ଆପଣମାନେ ହେଲେ ତିନି । ସେମିତି ପୁଅ ଦୁହିଁଙ୍କୁ ଗୋଟେ ହଂସ ଦେଇ କହିଲା— ହଂସକୁ ମିଶାଇ ତମେ ହେଲ ତିନି । ତାପରେ ଆଉ ଗୋଟେ ହଂସ ଦୁଇଝିଅଙ୍କୁ ଦେଇ ସେଇ କଥା କହିଲା । ଶେଷରେ ବଳି ପଡ଼ିଥିବା ହଂସ ଦୁଇଟିକୁ ଧରି କହିଲା—ଏମାନଙ୍କୁ ମିଶାଇ ମୁଁ ହେଲି ତିନି । ଏଣୁ ଏ ଦୁଇଟି ମୋର ।

ଜମିଦାର ଧନୀ ଚାଷୀଟିକୁ କହିଲେ—ଦେଖିଲ ତ ! ତୁମ ଦୁହିଁଙ୍କ ଭିତରେ କେତେ ତଫାତ୍ ! ତା'ର ବୁଦ୍ଧି ବଳରେ ସେ ଜମି ପାଇଲା । ତା' ଛଡ଼ା ତୁମେ ତ ଖୁବ୍ ଧନୀ ! ତୁମର ବା ଜମିଜମା କ'ଣ ଦରକାର ! ଏହା ଶୁଣି ଲାଜରେ ଧନୀ ଚାଷୀଟି କାନମୁଣ୍ଡ ଆଉଁସି ଘରକୁ ଫେରିଲା । ଆଉ ଗରିବ ଚାଷୀଟି ହଂସ ଦୁଇଟିକୁ ଧରି ମନ ଖୁସିରେ ଘରକୁ ଫେରିଲା । ତେଣୁ ଯାହାର ଅକଲ ଅଛି, ସେ ସବୁଠି ଆଦର ପାଏ ।

